

# ଉତ୍ସର୍ଗ

ପ୍ରଫେସର ଡଃ କାହ୍ନୁଚରଣ ମିଶ୍ରଙ୍କ ଚରଣ କମଳେ – ଭକ୍ତିପୂତ ଅର୍ଘ୍ୟ ରୂପେ ଏହି "ଅଦିନ ଝଡ" ଗଳ୍ପ ସଂକଳନଟିକୁ ଅର୍ପଣ କଲି ! ! ! ଆଶା, ସ୍ୱର୍ଗ ରାଜ୍ୟରେ ରହି ସମସ୍ତଙ୍କ ପ୍ରତି ତାଙ୍କରି ଆଶୀର୍ବାଦ ଧାରା ଝରି ଆସୁ – ଏତିକି ମୋର ବିନମ୍ର ପ୍ରାର୍ଥନା ।

ଶ୍ରୀମତୀ ପ୍ରିୟମ୍ବଦା ମିଶ୍ର

## କ୍ଷୁଦ୍ରଗଳ୍ପ - ଅଦିନ ଝଡ଼


**ଲେଖିକା ଓ ପ୍ରକାଶିକା**

ଶ୍ରୀମତୀ ପ୍ରିୟମ୍ବଦା ମିଶ୍ର

ବିବେକାନନ୍ଦ ମାର୍ଗ

ପ୍ଲଟ୍ ନଂ - ୨୧୩୦/୪୧୫୮

ଫୋନ୍ ନଂ - (୦୬୭୪) ୨୪୩୧୧୫୩

ଭୁବନେଶ୍ୱର - ୭୫୧ ୦୧୪

**ସଂପାଦିକା**

ଶ୍ରୀମତୀ ସ୍ନେହଲତା ମହାପାତ୍ର



**ପ୍ରଥମ ସଂସ୍କରଣ**

ଅଗଷ୍ଟ ୧୫ - ୨୦୦୪

**ପ୍ରକାଶ ସ୍ଥଳୀ**

ବିବରଣୀ ପ୍ରକାଶନୀ

ଟଙ୍କପାଣି ରୋଡ୍

ଭୁବନେଶ୍ୱର - ୭୫୧୦୧୪

ଫୋନ୍ - (୦୬୭୪) ୨୪୩୨୧୭୫

**ମୂଲ୍ୟ**

ଟ - ୨୫ ମାତ୍ର

# ମୋର ଜୀବନୀରୁ କିଛି ସ୍ମୃତି

ମୋର ନାଁ ପ୍ରିୟମ୍ବଦା ମିଶ୍ର । ମୋର ଜନ୍ମ ୧୯୨୯ ମସିହା ପୌଷ ମାସ ଶାମ୍ବ ଦଶମୀ ଦିନ । ଜମିଦାର ଚୌଧୁରୀ ବଂଶରେ ମୋର ଜନ୍ମ । ପିତାଙ୍କ ନାମ ଚୌଧୁରୀ ନିଳାଦ୍ରିନାଥ ମିଶ୍ର । ମାତାଙ୍କ ନାମ ଶ୍ରୀମତୀ ସରସ୍ୱତୀ ଦେବୀ । ମୁଁ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ିଛି । ଜମିଦାର ଘର ଝିଅମାନେ ସେ ସମୟରେ ବାର ତେର ବର୍ଷ ହୋଇଗଲେ ବାହାରକୁ ଛାଡ଼ନ୍ତିନି ପଢ଼ିବାକୁ । ସେଥିପାଇଁ ମୁଁ ପଢ଼ି ପାରିଲି ନାହିଁ । ମୋର ପିଲାଦିନରୁ ଲେଖାଲେଖି କରିବାକୁ ମନରେ ଥାଏ । କିନ୍ତୁ ସୁବିଧା ପାଏନି । ତାପରେ ମୋର ବିଭାଘର ହେଲା ପ୍ରଫେସର ଡଃ କାହ୍ନୁଚରଣ ମିଶ୍ରଙ୍କ ସାଙ୍ଗରେ । ସେ ଥିଲେ ସାହିତ୍ୟିକ ଓଡ଼ିଆ ପ୍ରଫେସର । ବିଭାଘର ପରେ ଶାଶୁ ଘର ବାପଘର ଜଞ୍ଜାଳରେ ମୁଁ ସୁବିଧା ପାଏନି ଲେଖିବାକୁ । କିନ୍ତୁ ମୋର ମନରେ ଥାଏ ଲେଖିବାକୁ । ମୋର ସ୍ୱାମୀଙ୍କର ବିଜେବି କଲେଜରୁ ଟ୍ରାନ୍ସଫର ହେଲା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟକୁ ପ୍ରଫେସର ହୋଇ ।

ସେଠାରେ ମୋତେ ଟିକେ ସମୟ ମିଳିଲା । କାରଣ ଝିଅ ଦୁଇଟା ବାହା ହୋଇଥିଲେ । ପୁଅ ମଧ୍ୟ ଚାକିରି କରି ରହିଥାଏ ବାହାରେ । ଆଉ ପୁଅ ଝିଅ ପାଖରେ ଥାଆନ୍ତି ।

ମୁଁ ଦିନେ ମୋ ସ୍ୱାମୀଙ୍କୁ କହିଲି ମୋର ଇଚ୍ଛା ବହୁତ ଦିନରୁ କିଛି କ୍ଷୁଦ୍ରଗଳ୍ପ ଲେଖିବାକୁ । ମୋତେ ଟିକେ ସାହାଯ୍ୟ କରିଦ...

ସେ କାବାକାଠ ପରି ମୋ ମୁହଁକୁ ଚାହିଁ ହସି କରି କହିଲେ ଏଘର ଜଞ୍ଜାଳ ଭିତରେ କଣ ଲେଖିବ । ମୁଁ କହିଲି ଲେଖେ ଯଦି ପାରିବି ଲେଖିବି ନ ହେଲେ ଲେଖିବିନି ।

ସେ ମୋତେ ଉତ୍ସାହିତ ହୋଇ କହିଲେ ହଉ ଲେଖ । ମୁଁ ଦେଖିବି ? ପ୍ରଥମ ଲେଖାମୋର ବାପଘର ଜମିଦାର ବଂଶର ପରମ୍ପରା ଇତିହାସ "ଜୀବନ ସ୍ମୃତି" ? ଦ୍ୱିତୀୟ ଲେଖା ସଉରୀନାନୀ ଗପ । ଏହି ଘରର ଜଞ୍ଜାଳ ଭିତରେ

୨୫/୩୦ଟା ଗପ ଲେଖିଲି। ଲେଖିଲା ପରେ ମୋ ସ୍ୱାମୀଙ୍କୁ ଦେଖାଏ। ସେଥିରେ ସେ ମୋତେ ସାହାଯ୍ୟ କରିଛନ୍ତି ବହୁତ। ମୋତେ ଲେଖିବାକୁ ବହୁତ ଭଲ ଲାଗେ। ଏପରିକି ବିଭାଘର ବ୍ରତଘରରେ ସବୁ କବିତା ମୁଁ ଲେଖେ?

ମୋର ସ୍ୱାମୀ ରିଟାର୍ଡ କଲାପରେ ଭୁବନେଶ୍ୱର ଚାଲି ଆସିଲୁ ନିଜ ଘରକୁ। ପ୍ରାଣବନ୍ଧୁ କର ମୋର ମାମୁଁ ହେବେ। ସେ ଦିନେ ହଠାତ୍ ଆସି ଆମ ଘରେ ପହଞ୍ଚି ମୋତେ କହିଲେ ତୁ କଣ ବହୁତ ଗପ ଲେଖିଛୁ। ଆଣିଲୁ ଦେଖିବା। ମୁଁ ଲେଖିବା ଗପ ଦେଖାଇଲି । ସେ ପଙ୍କଜ ବୋଲି ଗୋଟେ ଗପ ବାଛି ନେଲେ ପଞ୍ଚମରେ କି ସପ୍ତମ ଶ୍ରେଣୀରେ ଦବା ପାଇଁ। ସିଲେକ୍ଟ ହେଲା। ସେ ଆର୍ଟିକିଲ୍‌ରେ ମୁଁ ଟ.୫୦୦ ପାଇଛି। ଏହିପରି ସମ୍ବଲପୁର ମ୍ୟାଗାଜିନ୍, ବ୍ରହ୍ମପୁର ବିଦ୍ୟାଳୟ ମ୍ୟାଗାଜିନ୍, ଶଙ୍ଖ ଗୋପବନ୍ଧୁ ଶ୍ରାଦ୍ଧସଂଖ୍ୟା - ପ୍ରଜାତନ୍ତ୍ର ସବୁଥିରେ ମୋର ଗପ ପ୍ରକାଶିତ ହୋଇଛି। "ଜୀବନ ସ୍ମୃତି" ଗପ ମୋର ବାପ ଘରର ଇଷ୍ଟଦେବ ଲକ୍ଷ୍ମୀନୃସିଂହଙ୍କ ପାଖରେ ମୋର ଭାଇମାନଙ୍କ ସହଯୋଗରେ ଦୋଳରେ ଉନ୍ମୋଚିତ ହୋଇଥିଲା ୨୦୦୧ ରେ । ଆହୁରି ୨୫ଟା ଗପ ପ୍ରକାଶିତ ନ ହୋଇ ରହିଛି। ମୋର ସ୍ୱାମୀ ଡଃ କାହ୍ନୁଚରଣ ମିଶ୍ର ବର୍ଷେ ହେଲା ଚାଲିଗଲେ। ମୋର ମୂଳଦୁଆ ଭାଙ୍ଗିଗଲା ଦୁଃଖରେ ? ତଥାପି ଦରକାର ପଡ଼ିଲେ ସବୁ ଲେଖୁଛି। ସଦା ସର୍ବଦା ମୁଁ ଅସୁସ୍ଥ ମନକୁ ଟାଣ କରି ଚାଲିଛି । ମୋର ବାପଘର ଇଷ୍ଟଦେବଙ୍କର ଜଣାଣ ଲେଖି ଉନ୍ମୋଚିତ କରି ଫଟ ବାନ୍ଧି ଠାକୁରଙ୍କ ପାଖରେ ରଖିଛି।

ଏ ବର୍ଷ ପଣା ସଂକ୍ରାନ୍ତି ଦିନ ଆମ ଘର ପାଖରେ ହନୁମାନ୍ ଓ ତ୍ରିନାଥ ମହାପ୍ରଭୁଙ୍କର ଜଣାଣ ଲେଖି ଫଟ ବାନ୍ଧି ଉନ୍ମୋଚନ କରି ତାଙ୍କ ପାଖରେ ଟଙ୍ଗାଇଛନ୍ତି। ସିଲେଇ, ରନ୍ଧା, ବଗିଚା କାମ ସବୁ ମୁଁ ନିଜେ କରେ। ମୋତେ ବସିବାକୁ ଭଲ ଲାଗେ ନାହିଁ। ଏହିପରି ପ୍ରତ୍ୟେକ କାମରେ ମୁଁ ସର୍ବଦା ବ୍ୟସ୍ତ ଥାଏ ? ୨୫ଟା ଗପ ଦୁଇଟା ବହି କରି ପ୍ରକାଶିତ କରିବି ବୋଲି ଭାବିଛି। ଏତେଦିନ ପରେ ଭଉଣୀ ସ୍ନେହଲତା ଏହି "ଅଦିନ ଝଡ଼" ଗଳ୍ପ ସଙ୍କଳନଟିକୁ ଲାଗି ପଡ଼ି ପ୍ରକାଶ କରି ଦେଇ ଥିବାରୁ ମୁଁ କୃତଜ୍ଞ। ଜଗନ୍ନାଥ ସମସ୍ତଙ୍କର ମଙ୍ଗଳ କରନ୍ତୁ। ମୋର ସ୍ୱାମୀଙ୍କର ଆଶୀର୍ବାଦ ମୋ ପିଲାଙ୍କ ଉପରେ ଥାଉ। ଏତିକି ଜଗନ୍ନାଥଙ୍କ ପାଖରେ ମୋର ପ୍ରାର୍ଥନା।



# ମୁଖବନ୍ଧ

ଶ୍ରୀମତୀ ପ୍ରିୟମ୍ବଦା ମିଶ୍ରଙ୍କର ଗଳ୍ପ ସଂକଳନର ସମସ୍ତ ଗଳ୍ପ ପଢ଼ିବା ପରେ ମୋର ହୃଦବୋଧ ହୋଇଛି ଯେ ମାନବିକ ବନ୍ଧନକୁ ଆଧାର କରି ଗଳ୍ପ ଲେଖା ଆରମ୍ଭ ହୋଇଥିଲେ ବି ଏହା ଏବେବି ଗଳ୍ପର ମୂଳ ଉତ୍ସ। ଦାଣ୍ଡର ମଣିଷଠାରୁ ଘରର ଭୂଆଁଷୁଣୀ ପର୍ଯ୍ୟନ୍ତ ଏବଂ ବୋଲହାକ କରୁଥିବା ପିଲାଟି ଠାରୁ ସ୍ୱାମୀ ବା ସ୍ତ୍ରୀ ପର୍ଯ୍ୟନ୍ତ ସମସ୍ତଙ୍କୁ ପରିବାର ଏପରି ବାନ୍ଧି ରଖିଛି ଯେ ସେଥିରେ ମୁକୁଳିବାର ସ୍ୱପ୍ନ ନ ଦେଖି ମଣିଷ ବରଂ ପାରିବାରିକ ବନ୍ଧନକୁ ଦୃଢ଼ କରିବା ସକାଶେ ଚେଷ୍ଟା କରିଛି। 'ଅଦିନ ଝଡ଼' ସେହିପରି ଗୋଟିଏ ଗଳ୍ପ। ପଇସାବାଲା ପୁରୁଷକୁ ବାହା ହେବା ପରିବର୍ତ୍ତେ ସୁମି ତା ବାପାକୁ କହିଲା ମୋର ପଇସା ଦରକାର ନାହିଁ। ଭଲ ମଣିଷ, ଟାଣୁଆ ଦେହ ଦେଖିକରି ଦେ'। ଏଇ ଭଲ ମଣିଷ, ଟାଣୁଆ ମଣିଷମାନଙ୍କୁ ନେଇ ବଞ୍ଚିଛି ମଣିଷ ଜାତି। ବୁଦ୍ଧିଆର ଅକାଳ ମୃତ୍ୟୁ ଗଳ୍ପର ସମାପ୍ତିକୁ ଯେପରି ନାଟକୀୟ କରିଛି, ସେହିପରି ବେଦନା ଦାୟକ କରିଛି। 'ସ୍ୱପ୍ନ ସଂସାର' ଆଉ ଗୋଟିଏ ଏପରି ଗଳ୍ପ।

ପ୍ରାୟ ସବୁ କାଳରେ ମାନବିକ ବନ୍ଧନର ବିଭିନ୍ନ ଉଭାସ ଫୁଟି ଉଠେ ଶ୍ରାବଣର କଦମ୍ବ ପରି। ମଣିଷ ଭିତରେ ଯେଉଁ ଶକ୍ତି ଓ ସାମର୍ଥ୍ୟ, ସମ୍ବେଦନଶୀଳତା ଓ ପ୍ରବଣତା ଲୁଚି ରହିଛି ତାହା ବେଳକାଳ ଦେଖି ଫୁଟି ପଡ଼େ। ଉଷ୍ଣ ପ୍ରସବଣ ପରି ମଣିଷର ଛାତିତଳେ ଯେଉଁ ସ୍ନେହ, ପ୍ରେମର ଫଲଗୁ ଧାରାଟି ବହୁଛି ତାହା ଯେଉଁମାନେ ଦେଖିପାରନ୍ତି, ସେଇ ପ୍ରବାହର ଉନ୍ମାଦନା ଅନୁଭବ କରନ୍ତି ଏବଂ ସୁଲୁ ସୁଲିଆ ପବନ ଦେହ ଓ ମନକୁ ଉଲ୍ଲସିତ କରିବା ପରି ଯେଉଁ ସମ୍ପର୍କ ମଧୁରତା ସୃଷ୍ଟି କରେ ଅନ୍ତର ଭିତରେ । ତାହା ଶୁଖିଯାଏ ନାହିଁ ସମୟର ଘାତ ପ୍ରତିଘାତରେ; ବରଂ ବଞ୍ଚିବା ପାଇଁ ସଦାବେଳେ ଲଢୁଥାଏ ପ୍ରତିକୂଳତା ବିରୁଦ୍ଧରେ। 'ବିଳାସିମନ', 'ନିୟତିର ପରିହାସ', 'ସଉରୀନାନୀ', 'ଅକୁହା କଥା', 'ମମତା' ପ୍ରଭୃତି ଏହି ଶ୍ରେଣୀର ଗଳ୍ପ। ପାଠକକୁ ପ୍ରେରଣା ଦେବାର ଉତ୍ସ ଅଛି ଏ ସବୁଥିରେ।

ମାନବିକ ବନ୍ଧନ ଭିତରେ ଯଦି ମାନବିକ ଉତ୍ତରାଣର ଉପାଦାନ ନ ଥାନ୍ତା ତେବେ ନିମ୍ନଭୂମିରେ ମଣିଷ ମନରେ ଦେବତା ଅବତରଣ କରନ୍ତେ

ନାହିଁ । 'ସ୍ନେହର ଆକର୍ଷଣ', 'ଶେଷସ୍ୱପ୍ନ', 'ଭାଇଭାଗ', 'ଅନ୍ତିମ ଭଜନ', ପ୍ରଭୃତି ଗଳ୍ପରେ ସାଧାରଣ ଓ ସାମାନ୍ୟ ମଣିଷ ଭିତରେ ଯେ ଈଶ୍ୱର ଶକ୍ତି ଓ ଦୁଃଖ ସହିବାର ଏତେ ସମ୍ଭାର ଓ ସୁଖର ସାମନା କରିବା ପାଇଁ ଏତେ ସମ୍ବଳ ରଖିଥାନ୍ତି ତାହା ଲେଖିକାଙ୍କ ନିଖୁଣ ଲେଖନୀ ମୁନରେ ବିକଶିତ ହୋଇଛି ।

ଶ୍ରୀମତୀ ପ୍ରିୟମ୍ବଦା ମିଶ୍ର ଏଇ ପରିଣତ ବୟସରେ ଯେ ସାଧାରଣ ମଣିଷ, ତା'ର ସୁଖ ଦୁଃଖ, ଅଭାବ ଓ ଅନୁଭବ ବିଷୟରେ ଏତେ ଭାବି ପାରନ୍ତି ତାହା ହିଁ ତାଙ୍କ ଗଳ୍ପଗୁଡ଼ିକୁ କରିଛି ମଧୁର । ଆଧୁନିକତା ନ ଥାଇପାରେ ବା ନୂତନ ଗଳ୍ପଶୈଳୀ ଏଥିରେ ନାହିଁ, କିନ୍ତୁ ମାନବିକ ଉପଲବ୍ଧି ଯନ୍ତ୍ରଣା ଏବଂ ମାନବିକ ବନ୍ଧନର ମଧୁରତା ଏ ଗଳ୍ପଗୁଡ଼ିକୁ କରିଛି ମନଛୁଆଁ । ପ୍ରାୟ ଅଧିକାଂଶ ଗଳ୍ପ ଭିତରେ ରହିଛି ଏପରି ଏକ ମର୍ମବାଣୀ ଯାହା ଜୀବନର ଅପୂର୍ଣ୍ଣତା ସବୁକୁ ପୂର୍ଣ୍ଣ କରିବାରେ ସାହାଯ୍ୟ କରିବ । ସାହିତ୍ୟ କେବଳ ସ୍ୱପ୍ନ ଦେଖାଏ ନାହିଁ ସ୍ୱପ୍ନ ଦେଖୁଥିବା ମଣିଷ ବାସ୍ତବତାର ନିଷ୍ଠୁରତା ଯେତେବେଳେ ସହି ନ ପାରି ତା ହାତଧରି କହେ – 'ଉଠ ଚାଲ, ଅନେକ ବାଟ ଯିବାକୁ ଅଛି' ସେତେବେଳେ ସେ ଦମ୍ଭ ପାଏ, ଆସ୍ଥାରଖେ ମଣିଷ ଉପରେ ।

ଶ୍ରୀମତୀ ପ୍ରିୟମ୍ବଦା ମିଶ୍ରଙ୍କ ଗଳ୍ପଗୁଡ଼ିକ ପାରିବାରିକ କାହାଣୀକୁ ଆଧାର କରି ଗଢ଼ି ଉଠିଛି; ସେହି କାରଣରୁ ଏପରି ଘଟଣା ଓ ଚରିତ୍ରମାନଙ୍କ ସହିତ ତାର ପରିଚୟ ଅଛି ବୋଲି ପାଠକ ମନେ କରେ । ଏହା ହିଁ ହେଉଛି ଲେଖିକାଙ୍କର ସଫଳତା । ତାଙ୍କର ଅନୁଭୂତି, ମଣିଷ ହୃଦୟ ଚିହ୍ନିବାର ଶକ୍ତି ଏବଂ ମଣିଷକୁ ସର୍ବହରା କରି ରାଜଦାଣ୍ଡରେ ଛାଡ଼ି ନ ଦେଇ ଈଶ୍ୱରଙ୍କୁ ଭରସା କରି ତାକୁ ଚାଲିବା ପାଇଁ ସେ ଅନେକ ଗଳ୍ପରେ ଯେଉଁସବୁ ପରିବେଶ ସୃଷ୍ଟି କରିଛନ୍ତି ତାହା ହିଁ ନିତିଦିନିଆ ଜୀବନ କାହାଣୀର କିୟଦଂଶ ।

ସରଳ, ସୁନ୍ଦର ଭାଷା ଓ ଛାତି ତଳର ଅନୁଭବ ହିଁ ଲେଖାଗୁଡ଼ିକୁ ସୁଖପାଠ୍ୟ କରିଛି । ମୋତେ କିଛି ଲେଖିବା ପାଇଁ କରିଥିବାରୁ ମୁଁ ତାଙ୍କୁ ଶ୍ରଦ୍ଧା, ସମ୍ମାନ ଓ କୃତଜ୍ଞତା ଜଣାଉଛି ।

**ସାତକଡ଼ି ହୋତା**

# ଅଭିମତ

ମହାନଦୀର ବିସ୍ତିର୍ଣ୍ଣ ବାଲୁକା ଶଯ୍ୟାର ଜ୍ୟୋତ୍ସ୍ନା ତା ପଲ୍ଲୀ ବୁକୁରେ ଅବସ୍ଥିତ କଟକ ଜିଲ୍ଲାର ଭେଡ଼ା ଗ୍ରାମରେ ଲେଖିକା ପ୍ରିୟମ୍ବଦା ମିଶ୍ରଙ୍କର ଜନ୍ମ ୧ ୯ ୨ ୯ ପୌଷ ଦଶମୀ ଦିନ। ପିତା ଚୌଧୁରୀ ଶ୍ରୀଯୁକ୍ତ ନିଳାଦ୍ରି ନାଥ ମିଶ୍ର – ମାତା ଶ୍ରୀମତୀ ସରସ୍ୱତୀ ଦେବୀଙ୍କର ଏକମାତ୍ର ଅଲିଅଳ ଝିଅ ସେ ଅଟନ୍ତି। ପଲ୍ଲୀ ବୁକୁର ପାଣି ପବନରେ ବଢ଼ିଥିବା ଲେଖିକାଙ୍କର ଏ "ଅଦିନ ଝଡ଼" ଗଳ୍ପ ସଙ୍କଳନଟିରେ ପଲ୍ଲୀର ସମସ୍ତ ଜୀବନଧାରା ଅତି – ନିଖୁଣ ଓ ପ୍ରାଞ୍ଜଳ ଭାବରେ ଫୁଟି ଉଠିଛି। ପ୍ରତିଟି ଗଳ୍ପ ସରଳ, ସୁନ୍ଦର ଓ ସାଧାରଣ ଜୀବନର ଗତାନୁଗତି ଚିନ୍ତାଧାରା – ଉପରେ ଲିଖିତ – ଏହାର ଭାଷା ଓ ଚିତ୍ର ଚିତ୍ରଣ ଅତି ଉଚ୍ଚକୋଟୀର !

ବଣ ମଲ୍ଲୀ ଭଳି ବହୁ ପ୍ରତିଭା ଲୁକ୍କାୟିତ ହୋଇ ରହି ଯାଉଛି ଘର କଣରେ ! ଏହି ପ୍ରତିଭାମୟୀ ଲେଖିକା ଅଳ୍ପ ପାଠ ପଢ଼ି ମଧ୍ୟ ଏତେ ସୁନ୍ଦର ଲେଖି ପାରନ୍ତି – ଗଳ୍ପଗୁଡ଼ିକ ପଢ଼ିଲେ ଜାଣିହୁଏ।

ଶ୍ରୀମତୀ ପ୍ରିୟମ୍ବଦା ମିଶ୍ରଙ୍କ ବିବାହ ଓଡ଼ିଆ ପ୍ରଫେସର ଡାଃ କାହ୍ନୁଚରଣ ମିଶ୍ରଙ୍କ ସହିତ ପଟ୍ଟାମୁଣ୍ଡାଇରେ ସମ୍ପନ୍ନ ହୋଇ ଥିଲା। କ୍ଷୀରନୀର ଭଳି ଉଭୟଙ୍କ ଅଗାଧ ସ୍ନେହ ଭରି ରହିଥିଲା। ୭ଟି ପୁତ୍ର ଓ କନ୍ୟା ସନ୍ତାନର ଜନନୀ ହେବାର ସୌଭାଗ୍ୟ ସେ ଅର୍ଜନ କରିଛନ୍ତି – ସେମାନଙ୍କ ଭିତରୁ – ପୁତ୍ର ଇଞ୍ଜିନିୟର ଶ୍ରୀଯୁକ୍ତ ଦେବପ୍ରସାଦ ମିଶ୍ର – ବ୍ୟାଙ୍କ ଅଫିସର – ଶ୍ରୀଯୁକ୍ତ ଜଗନ୍ନାଥ ମିଶ୍ର ଏବଂ ଶକ୍ତି ମିଶ୍ର – ସେବା ପେପର ମିଲର ମ୍ୟାନେଜର। ବୋହୁ ଶ୍ରୀମତୀ ଜୟଶ୍ରୀ, ଶୁଭଶ୍ରୀ, ଇତିଶ୍ରୀ। ଝିଅ ହେଲେ – ଶ୍ରୀମତୀ ସୀମା ମିଶ୍ର – ଜ୍ୟୋତ୍ସ୍ନା ଷଡ଼ଙ୍ଗୀ, ରଶ୍ମି ଶତପଥୀ, ଦିପ୍ତୀ ମିଶ୍ର, ଜାମାତା ଇଞ୍ଜିନିୟର ଶଚୀଦାନନ୍ଦ ମିଶ୍ର ଡାଃ ରାଜ କିଶୋର ଷଡ଼ଙ୍ଗୀ, ପ୍ରଫେସର ଶରତ ଚନ୍ଦ୍ର ଶତପଥୀ, ବ୍ୟାଙ୍କ ମ୍ୟାନେଜର ପ୍ରଦ୍ୟୁମ୍ନ ମିଶ୍ର ଏବଂ ୯ଟି ନାତୁଣୀ ଓ ୪ଟି ନାତି ଅଛନ୍ତି। ଭାଇ – ଶ୍ରୀଯୁକ୍ତ ହରପ୍ରସନ୍ନ ମିଶ୍ର, ଗୌରପ୍ରସନ୍ନ ମିଶ୍ର ଓ ଦୁର୍ଗାପ୍ରସନ୍ନ ମିଶ୍ର।

ସ୍ୱାମୀ ପ୍ରଫେସର ଡାଃ କାହ୍ନୁ ମିଶ୍ର ୨୦୦୧ ଡିସେମ୍ବର ୫ରେ ଇହଲୀଳା ସମ୍ବରଣ କଲେ – ସ୍ୱାମୀଙ୍କ ବିୟୋଗରେ ଶୁଆ ଶାରୀ ପରି ରହିଥିବା ବନ୍ଧନ – ଶ୍ରୀମତୀ ମିଶ୍ରଙ୍କ ପକ୍ଷରେ କଷ୍ଟଦାୟକ ହୋଇପଡ଼ିଛି। ତଥାପି ହାତରୁ ଲେଖା ବନ୍ଦ ହୋଇନାହିଁ – ସେ ଆହୁରି ଲେଖିଚାଲିଛନ୍ତି। ବହୁ ଲେଖା ତାଙ୍କର

ଅପ୍ରକାଶିତ ହୋଇ ରହିଛି । ଅନେକ ଲେଖା ଓଡ଼ିଶାର ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶ ପାଇ ସାରିଛି । ନିକଟରେ ୨୦୦୧ରେ ଭେଢ଼ା ଗ୍ରାମରେ ତାଙ୍କର ଏକ 'ଜୀବନର ସ୍ମୃତି' ସଙ୍କଳନ – ଉନ୍ମୋଚନ ହୋଇଥିଲା । ବହୁ ସୁନ୍ଦର କବିତା ପ୍ରତି ବିବାହ ବ୍ରତରେ ସେ ଲେଖି ଗାଉଥିଲେ ।

ଶ୍ରୀମତୀ ମିଶ୍ର ଅତ୍ୟନ୍ତ ସ୍ନେହୀ, ଶାନ୍ତ, ଶିଷ୍ଟ, ଉଦାର ପରୋପକାରୀ ମହିଳା ଅଟନ୍ତି । ସେ ସମସ୍ତଙ୍କର ସୁବାସି ନାନୀ । ମୁଁ ତାଙ୍କୁ ସୁବାସିନୀ ନାନୀ ବୋଲି ଡାକେ । ବଡ଼ ଭଉଣୀ ରୂପେ ସେ ମତେ ତାଙ୍କର ଅଗାଧ ସ୍ନେହ ଡୋରିରେ ବାନ୍ଧି ଦେଇଛନ୍ତି । ସେ ଭଲ ରାନ୍ଧି ସମସ୍ତଙ୍କୁ ଖୁଆଇବାକୁ ଭଲ ପାଆନ୍ତି – ଘରକରଣାରେ ସେ ନିପୁଣା – ଘର ସଜାଇବା, ବଗିଚା କାମ, ସିଲେଇ, ସୁନ୍ଦର ଏମ୍ବ୍ରୋଡୋରୀ କାମ କରିବାରେ ସେ ସିଦ୍ଧହସ୍ତା । ପୁଅ ଓ ଝିଅମାନଙ୍କୁ ସମସ୍ତ ଚାରୁକଳାରେ ନିପୁଣା କରାଇ ପାରିଛନ୍ତି ସେ ।

ତାଙ୍କର ଲେଖାଗୁଡ଼ିକ ମଧ୍ୟ ସରଳ ଜୀବନ ଧାରା ଉପରେ ଆଧାରିତ । "ଅଦିନ ଝଡ଼"ରେ ନୋଳିଆ ଜୀବନର କାହାଣୀ – "ଶେଷ ମୂର୍ଚ୍ଛନା"ରେ ଆଶା ଓ ନିରାଶାର ଗତାନୁଗତିକ ଜୀବନଧାରା, "ଶଙ୍ଖ ବିରାଡ଼ି"ରେ ଚେମା ମା'ର ନିଃସଙ୍ଗ ଜୀବନ – ବେଶ୍ ସୁନ୍ଦର ଭାବରେ ଫୁଟି ପାରିଛି । ଏହାଛଡ଼ା – ସଉରୀ ନାନୀର ସମାଜ ସେବା – ଜୀବନ ସଂଗ୍ରାମ – ଭାଇଭାଗ – ସର୍ବହରା – ନିୟତିର ପରିହାସ – "ଭଙ୍ଗା ସଂସାର" ପ୍ରଭୃତି ଲେଖାଗୁଡ଼ିକ ଅତି ସୁନ୍ଦର, ସରଳ ଓ ସମସ୍ତେ ବୁଝି ପାରିବା ଭଳି ଜୀବନ୍ତ ଭାବରେ ଫୁଟି ଉଠିଛି । ତାଙ୍କର ଏ ଦୁର୍ଲ୍ଲଭ ଲେଖାଗୁଡ଼ିକ – କିପରି ଲୋକଲୋଚନକୁ ଆସି ଆଦୃତ ହୋଇ ପାରିବ – ସେଥିପାଇଁ ମୁଁ ଏ ସଙ୍କଳନଟିକୁ ସମ୍ପାଦନା କରି ପ୍ରକାଶ କରିବା ପାଇଁ ଚେଷ୍ଟା କରିଛି ମାତ୍ର ।

ପ୍ରତିଭାମୟୀ ମହିଳାଙ୍କ ଦ୍ୱାରା ପ୍ରକାଶିତ 'ଅଦିନ ଝଡ଼' ସଙ୍କଳନଟି ପାଠକ ଓ ପାଠିକାଙ୍କ ମନକୁ ଛୁଇଁ ପାରିଲେ ଲେଖିକାଙ୍କର ଶ୍ରମ ସାର୍ଥକ ହେବ ବୋଲି ମୋର ବିଶ୍ୱାସ । ଭାଇନା – ଡାଃ କାହ୍ନୁଚରଣ ମିଶ୍ର ସ୍ୱର୍ଗ ରାଜ୍ୟରେ ରହି-ନିଶ୍ଚିତ ଭାବରେ ଏ ସଂକଳନଟି ପ୍ରତି ତାଙ୍କର ଆଶୀର୍ବାଦ ଧାରା ଢାଳି ଦେବେ ନିଶ୍ଚୟ – ଜୟ ଶ୍ରୀ ଜଗନ୍ନାଥ ଲେଖିକାଙ୍କ ଲେଖନୀକୁ ଉଜ୍ଜିବୀତ କରନ୍ତୁ ।ଏତିକି ମୋର ପ୍ରାର୍ଥନା ।

ସମ୍ପାଦିକା

**ଶ୍ରୀମତୀ ସ୍ନେହଲତା ମହାପାତ୍ର**

# ଅମୃତମୟୀ ବୋଉ ମୋର

ହେତୁ ହେବା ଦିନୁ ଦେଖିଆସିଚି ସେଇ ଅମୃତମୟୀ ଆନନ୍ଦମୟୀ ଦେବୀ ପ୍ରତିମା ପରି ମୋର ବୋଉକୁ । ଯିଏ ସକାଳୁ ସଞ୍ଜଯାଏ ଲୋଟଣୀ ପାରା ପରି ସବୁରି କାମ କରି ଚାଲିଥିବ । ଆମ ସାତ ଭାଇଭଉଣୀ ଓ ଯୌଥ ପରିବାରର ଅସରନ୍ତି ଦାୟିତ୍ୱ ନେଇ କିପରି ସେ ସବୁରି ମୁହଁରେ ଏତେ ହସ ଫୁଟାଇ ପାରୁଥିଲ ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ଶାରୀରିକ ଅସୁସ୍ଥତା ତାକୁ ଅନେକ ସମୟରେ ଶଯ୍ୟାଶାୟୀ କରିଥାଏ । କିନ୍ତୁ ପର ମୁହୂର୍ତ୍ତରେ ସବୁ କିଛି ଭୁଲି ପୁଣି ନିତିଦିନିଆ ଜୀବନ ଧାରାରେ ଦ୍ୱିଗୁଣ ଉତ୍ସାହ ସହ ସେ ସାମିଲ ହୋଇଯାଏ । କେଉଁଠାରୁ ପାଏ ସେ ଏତେ ଶକ୍ତି ? ଅଫୁରନ୍ତ ଭଲ ପାଇବା, ଅସୀମ ସୌନ୍ଦର୍ଯ୍ୟବୋଧ, ଜୀବନକୁ ବଞ୍ଚିବାର ଅଦମ୍ୟ ଆଗ୍ରହ, ଏହି ସବୁ ଦିବ୍ୟଗୁଣ ବୋଧେ ବୋଉକୁ ଏତେ ଶକ୍ତିମୟୀ କରିଥାଏ ।

ବୋଉ ମୋର ଅମୃତ ହସ୍ତା । ତା'ର ହାତ ରନ୍ଧା ଯିଏ ଥରେ ଚାଖିଥିବ କେବେହେଲେ ଭୁଲିପାରିବିନି । ବୋଉ ପାଇଁ ତ ପିଲାଦିନ ଆମର ଥିଲା ଉତ୍ସବମୟ, ପ୍ରତିଟି ପର୍ବପର୍ବାଣୀରେ କେତେ ଆନନ୍ଦ ଓ ଉତ୍ସାହ ସହିତ ନିଜ ହାତରେ କେତେ ପ୍ରକାର ରାନ୍ଧିବ, ସବୁ ବନ୍ଧୁବାନ୍ଧବଙ୍କୁ ସଙ୍ଗୁଳିବ, ଆଉ ଆଦରର ସହିତ ବଳେଇ ବଳେଇ ଖୁଆଇବ ଯାହା ଏବେ ପ୍ରାୟତଃ ଦୁର୍ଲଭ । ମନେଅଛି, ଏତେ ଜଞ୍ଜାଳ ଭିତରେ ସେ ଆମ ଡ୍ରେସ୍ ଗୁଡ଼ିକରେ ଭାରି ସୁନ୍ଦର ଫୁଲ ପକାଏ, କ୍ରୁସ୍‌ରେ କାମ କରି ସଜାଏ । ତା'ର ଝୋଟି ପକାଇବାର ଶୈଳୀ, ଯାହା ମୋତେ ପର ଜୀବନରେ ଜଣେ ଚିତ୍ରକର ହେବାର ଉତ୍ସାହ ଯୋଗାଇ ଦେଇଥିଲା । ହାରମୋନିୟମ ବଜେଇ ବଡ଼ ସୁନ୍ଦର ଗୀତ ବି ଗାଇ ପାରୁଥିଲା ବୋଉ ମୋର । ମନେ ପଡ଼ିଯାଏ ମୁଁ ୩/୪ ବର୍ଷର ହୋଇଥାଏ ମାମୁଁ ଘରେ ରଜସମୟରେ ବୋଉ କୋଳରେ ଦୋଳିରେ ଝୁଲିଝୁଲି ତାଠାରୁ ଅତି ସୁଲଳିତ ସୁରରେ ଗୀତ ଶୁଣିବାର କଥା ବୋଧହୁଏ ସଂଗୀତ ଜଗତକୁ ସେଇ ମୋର ପ୍ରଥମ ପ୍ରବେଶ । ନନା ୰ପ୍ରଫେସର ଡାଃ କାହ୍ନୁଚରଣ ମିଶ୍ର ବି ବଡ଼ ମଧୁର ସୁରରେ ଗୀତ ଗାଉଥିଲେ, ଯାହା ଘରେ ଏକ ସଂଗୀତମୟ ପରିବେଶ ସୃଷ୍ଟି କରିଥିଲା । ବୋଉ ମୋର ସର୍ବଗୁଣ ସମ୍ପନ୍ନା ।

ସବୁଠାରୁ ଆଶ୍ଚର୍ଯ୍ୟ ଲାଗିଲା ଯେତେବେଳେ ପରିଣତ ବୟସରେ ବୋଉ କବିତା ଓ ଗଳ୍ପ ଲେଖିବାକୁ ଆରମ୍ଭ କଲା । ତା'ର ଶିକ୍ଷାଥିଲା ୫ମ ଶ୍ରେଣୀଯାଏ । ରକ୍ଷଣଶୀଳ ଜମିଦାର ଘର ଝିଅ । ଶୁଣିଥିଲି ସବାରୀରେ ସ୍କୁଲ

ଯିବାକୁ ପଡୁଥିଲା ଟିକିଏ ବଡ଼ ହେବାରୁ ପାଠ ପଢ଼ାରେ ଡୋରି ବନ୍ଧାହେଲା। ବିବାହ ବ୍ରତ ଆଦି ସମୟରେ ପରିବାରର ପ୍ରତ୍ୟେକ ସଦସ୍ୟ ପାଇଁ ବୋଉ ଅତି ହୃଦୟ ସ୍ପର୍ଶୀ ଭାଷାରେ ଗୀତ ଲେଖେ, ପଢ଼ିଲେ ଆଖିରେ ଲୁହ ଭରିଯାଏ, ଅନେକ ଗଳ୍ପ ବହୁତ ପତ୍ର ପତ୍ରିକାରେ ପ୍ରକାଶିତ ବି ହୋଇଛି । ଆଜି ଆମର ଅତି ପ୍ରିୟ ସ୍ନେହ ମାଉସୀଙ୍କ ଆଗ୍ରହ ଉତ୍ସାହ ପାଇଁ ଏହି ଗଳ୍ପ 'ଅଦିନ ଝଡ଼' ବହି ଆକାରରେ ଆତ୍ମ ପ୍ରକାଶ ଲାଭ କରି ପାରିଛି। ସେଥିପାଇଁ ଆମେ ସମସ୍ତେ ଆନନ୍ଦିତ।

ଆମର ପିଲାଦିନ ବି ଏପରି ଏକ ଦୁର୍ଲଭ ସମୟ ଥିଲା ଯାହା ଏଯାଏ ଜୀବନ ଧାରାର ପ୍ରତି ପାଦପାତରେ ଅମୃତ ବର୍ଷା କରି ଆସିଛି। ଆକାଶ ପରି ଉଦାର ଥିଲେ ନନା ମୋର ଓ ଧରିତ୍ରୀ ପରି ସୁନ୍ଦର ଓ ସହିଷ୍ଣୁ ବୋଉ ମୋର। ଦୁହିଁଙ୍କର ଭଲ ପାଇବାର ଛତ୍ରଛାୟା ତଳେ, ମଧୁର ଦାମ୍ପତ୍ୟର ମାଧୁରିମା ତଳେ, ଆମ ସାତ ଭାଇଭଉଣୀଙ୍କର ଶୈଶବ ଓ କୈଶୋର ଅତି ଆନନ୍ଦମୟ ଥିଲା ସ୍ନେହର ସବୁଜିମା ଛାଇଯାଇଥିଲା ଆମ ଜୀବନରେ, ଯାହା ଜୀବନକୁ କରିଥିଲା ଅତି ସୁକୁମାର, ମନୋରମ। ଯାହାର ବାସ୍ନା ଏବେବି ବାସ୍ନାୟିତ କରି ରଖିଛି ଜୀବନକୁ। ସ୍ନେହ ଶ୍ରଦ୍ଧା ମାନବିକତାର ମଧୁର ମନ୍ଦାକିନୀ ଆମ ଜୀବନକୁ ମଙ୍ଗଳମୟ କରିଥିଲା। ଯେଉଁମାନେ ସେମାନଙ୍କ ସଂସ୍ପର୍ଶରେ ଆସିଛନ୍ତି ସେମାନେ ତାହା ଅନୁଭବ କରିଥିବେ। ଦୁହେଁ ଦୁହିଁଙ୍କୁ ସମ୍ମାନ କରୁଥିଲେ। ଶ୍ରଦ୍ଧା ଓ ଧୈର୍ଯ୍ୟ ତାଙ୍କର ସବୁଠାରୁ ବଡ଼ ଧନ ଥିଲା, ଯେଉଁଥି ପାଇଁ ସବୁ ଝଡ଼ଝଞ୍ଜା ଭିତରେ ତାଙ୍କ ଜୀବନ ତରୀଟି ଅତି ସୁନ୍ଦର ଭାବରେ ବହି ଚାଲିଥିଲା। ବୋଉର ଗଳ୍ପ ଗୁଡ଼ିକରେ ଏହା ସୁସ୍ପଷ୍ଟ। ଗଳ୍ପଗୁଡ଼ିକ ଯେତିକି ବାସ୍ତବ ସେତିକି ମାନବଧର୍ମୀ ବି ହୋଇପାରିଛି। ନନା ଆଜି ଆମ ଗହଣରେ ନାହାନ୍ତି ସତ କିନ୍ତୁ ଯେଉଁଠାରେ ବି ଥାଆନ୍ତୁ ନା କାହିଁ ସେ ଏ ବହି ପ୍ରକାଶିତ ହେବା ଦେଖି ନିଶ୍ଚୟ ଅତି ଆନନ୍ଦିତ ହେଉଥିବେ।

ଏହି ବହି "ଅଦିନ ଝଡ଼" ପ୍ରକାଶନର ଗୁରୁଭାର ବହନ କରିଥିବାରୁ ଆଉଥରେ ସ୍ନେହମୟୀ ସ୍ନେହମାଉସୀଙ୍କୁ ମୋର ଅନ୍ତରର ଗଭୀରତମ ସ୍ଥାନରୁ ଶ୍ରଦ୍ଧା, ଭକ୍ତି ଓ କୃତଜ୍ଞତା ଜଣାଉଛି। ଜଗନ୍ନାଥଙ୍କ ପାଖରେ ପ୍ରାର୍ଥନା କରୁଚି ବୋଉକୁ ମୋର ସୁସ୍ଥ ରଖନ୍ତୁ, ସେ ଏପରି ସୁନ୍ଦର ସୁନ୍ଦର ଗଳ୍ପ ରଚନା କରି ଚାଲୁଥାଉ। ଶେଷରେ ଏ କବିତାଟି ବୋଉକୁ ଉତ୍ସର୍ଗ କରି ରହୁଛି।

ସୀମା ମିଶ୍ର
(ବୁଲୁ)

# ପଦେ ଅଧେ

ଦୀର୍ଘ ଚାଳିଶ ବର୍ଷରୁ ଊର୍ଦ୍ଧ୍ୱ ଆମ ପରିବାରରେ କିମ୍ବା ବନ୍ଧୁବାନ୍ଧବଙ୍କ ପରିବାରରେ ସମସ୍ତ ବ୍ରତ ଘର, ବିବାହ, ଜନ୍ମଦିନ ଆଦି ଶୁଭ ଅବସରରେ ସୁନ୍ଦର ରଙ୍ଗିନ୍ କାଗଜରେ ଛପା ଭାବମୟ କବିତାଟିଏ ନିଶ୍ଚୟ ବଣ୍ଟା ହୋଇଥିବ ଏବଂ ଏହାର ରଚୟିତା ଥିବେ ଶ୍ରୀମତୀ ପ୍ରିୟମ୍ବଦା ମିଶ୍ର। ସରଳ ଭାଷାରେ ଏହି ଶୁଭ ଦିନରେ କବିତାଟି ଯେପରି ଭାବମୟ ଥାଏ ସେହିପରି ସରଳ ଓ ସୁପାଠ୍ୟ ମଧ୍ୟ ଥାଏ। ଏବେ ମଧ୍ୟ ସେହି ପ୍ରଥା ଚାଲିଆସିଛି ସତୁରି ଦଶକରେ । ଯେତେବେଳେ ଶ୍ୱଶୁର ଡକ୍ଟର କାହ୍ନୁଚରଣ ମିଶ୍ର ବ୍ରହ୍ମପୁର ବିଶ୍ୱ ବିଦ୍ୟାଳୟରେ ମୁଖ୍ୟ ଅଧ୍ୟାପକ ଭାବରେ କାମ କରୁଥିଲେ ସେତେବେଳ ଠାରୁ ବିଭିନ୍ନ ପତ୍ର ପତ୍ରିକାରେ ଆମେ ପଢ଼ିଲୁ ଶ୍ରୀମତୀ ପ୍ରିୟମ୍ବଦା ମିଶ୍ରଙ୍କର ଗଳ୍ପ।

"ଅଦିନ ଝଡ଼" ସଙ୍କଳନରେ ଗଳ୍ପ ଗୁଡ଼ିକର ଭାଷା ଅତି ସରଳ, ଯେପରି ଆଈ ମା' ପିଲାଙ୍କୁ ଗପ ଶୁଣାଉଛନ୍ତି। ଗଳ୍ପଗୁଡ଼ିକ ଭାବମୟ, ଦୈନନ୍ଦିନ ଘଟଣାକୁ ନେଇ ଲିଖିତ। ଲାଗେ ଯେପରି ସତ କଥାଗୁଡ଼ିଏ। ସତେ ଅବା ନିଜ ଆଖି ଆଗରେ ଏଇ ଘଟଣା ସବୁ ଘଟି ଯାଉଛି। ସେଥିପାଇଁ "ଅଦିନ ଝଡ଼"ର ଗଳ୍ପଗୁଡ଼ିକ ସୁଖପାଠ୍ୟ। ପାଠକମାନଙ୍କ ଦ୍ୱାରା ଏହା ଯେ ଆଦୃତ ହେବ ତାହା ନିଃସନ୍ଦେହ।

**ଜାମାତା**

**ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର**

# କିଛି ସ୍ମୃତି !!

ସୁଝୀନ ପରଦାର ତଳୁ
କେଉଁ କୋହରତି ଦିଗବଳୟରୁ
ବାରଂବାର ଦିଶିଯାଏ
କାହାର ସ୍ନେହବୋଳା ହାତ
ପରିଷି ଦିଏ ସହସ୍ର ଅମୃତ ।
ଭରିଦିଏ ପ୍ରତିଟି ଶୂନ୍ୟ ଥାଳ
ଅମୃତର ଅକଳନ୍ତି ବୁନ୍ଦାରେ !!!
ଆଛନ୍ନ ଅନ୍ଧକାରରେ
ଧାରାଏ ଆଲୋକ ପରି,
ଭରା ମେଘ ରାତିରେ
ବିଦ୍ୟୁତର ରେଖାଟିଏ ପରି,
ସଳିତାଟି ସରିସରି ଯାଏ
ଉଜ୍ଜ୍ୱଳିତ କରେ,
ସବୁ ଅଶ୍ରୁର ଆସର.
ମମତାର ଅସରନ୍ତି ଆଲୋକରେ ।

ନିର୍ମମ ନିଦାଘରେ ଝଡ଼ ଅନ୍ଧାରରେ
ପଣତ ଯାହାର ଲମ୍ବି ଆସେ,
ଢାଙ୍କିଦିଏ,
ମୋର ଧୂଳି ଧୂସରିତ ଦେହକୁ
ଆଶା ଆଶ୍ୱାସନାର ମଧୁମନ୍ତ୍ର ହୋଇ
ଘେରି ରହିଥାଏ,
ତାର ସ୍ନେହର ରେଶମ ଡୋରି !!
ସବୁ ସ୍ପର୍ଶାତୁର ସମୟକୁ
ଗୋଟିଏ ନିଆରା ଶବ୍ଦ
କୋଟିଏ ମମତାର ସୁର,
ଗୁଞ୍ଜରିତ ହୁଏ ଆକାଶ ବତାସ
ଉଲ୍ଲସିତ କରେ ପ୍ରତି ଲୋମ କୂପ
ସେଇତ ମୋ ! ବୋଉ
ଯାହା ବିନା ଆଦି ନାହିଁ ଅନ୍ତ ନାହିଁ
ସବୁବେଳେ ସେହି ମୋର ସାହା !!

ବୁଲୁ

# ସୂଚୀପତ୍ର

# ଅଦିନ ଝଡ

ବୁଢ଼ିଆଟି ଜାତିରେ ନୋଳିଆ। ସମୁଦ୍ରକୂଳ ପାଖରେ ଝାଟିମାଟିର ପଲ୍ଲାଟିଏ ମାରିଥାଏ। ପ୍ରତିଦିନ ସକାଳୁ ସୁମି ପଖାଳ କଂସାଏ, ପିଆଜ, ଲୁଣ, ଲଙ୍କା ସ୍ୱାମୀକି ତାର ଥୋଇଦିଏ। ସେ ଖାଇଦେଇ, ଜାଲବିଡ଼ାକ କାନ୍ଧରେ ପକାଇ ବାହାରିପଡ଼େ ମାଛମାରି - ସୂର୍ଯ୍ୟ ଅସ୍ତ ହେଲାବେଳକୁ ଫେରେ। ସୁମି ପଲ୍ଲା ଦୁଆର ମୁହଁରେ ବସିଥାଏ, ତା ଆସିବା ବାଟକୁ ଚାହିଁ।

ସମୁଦ୍ରକୂଳ, ପଲ୍ଲା ଘର, ଚୁଲିଟିଏ କଣକୁ ପଡ଼ିଛି। ମାଟିହାଣ୍ଡି ଦୁଇଗୋଟି ଚୁଲି ଉପରେ। ସୁମି ଆଣିଥିବା ବେତ ପେଡ଼ିଟି ଆଉ ଗୋଟାଏ କଣରେ ଅଛି। ବେତ ପେଡ଼ିଟି ଉପରେ କନ୍ଥା ଦୁଇ ଖଣ୍ଡ। ବାଉଁଶ ଉପରେ ପିନ୍ଧାଲୁଗା ଚାରି ଖଣ୍ଡ ପଡ଼ିଛି। ପଲ୍ଲାଟି ଭିତରେ ତାର ଘରକରଣା ଜିନିଷ ମାତ୍ର ଏତିକି। ସେତିକି ଜିନିଷକୁ ଛାଡ଼ି ସେ ପଦାକୁ ଯାଏ ନାହିଁ।

ସନ୍ଧ୍ୟାବେଳକୁ ବୁଢ଼ିଆ ମାଛ ମାରି ଆସି ସୁମିକୁ ଡାକ ଛାଡ଼େ। "ଇଲୋ ସୁମି, ଚାଉଳ ନେ, ମାଛ ନେ, ରାନ୍ଧେ"। ସେ ତର ତର କରି ସ୍ୱାମୀ ହାତରୁ ସେତକ ଜିନିଷ ନେଇ ରାନ୍ଧି ବସେ।

ରାନ୍ଧିସାରି, ପତର ଗୋଟେ ପକାଇ ବାଢ଼ିଦିଏ। ଦୁଇ ପ୍ରାଣୀ ସାଙ୍ଗ ହୋଇ ଖାଇବସନ୍ତି। ଖାଇସାରିଲେ ସେ ସ୍ୱାମୀ ହାତକୁ ଗୋଟିଏ ପିକା, ଦିଆସିଲି ବଢ଼ାଇଦିଏ। ପଲ୍ଲା ଦୁଆର ମୁହଁରେ ବସି ବୁଢ଼ିଆ ପିକା ଟାଣେ ସୁମି ତା ପାଖରେ ବସେ। ଦୁଇ ପ୍ରାଣୀ, କେତେ ରାତି ପର୍ଯ୍ୟନ୍ତ ସୁଖ ଦୁଃଖ ହୋଇ ଶୋଇବାକୁ ଯାଆନ୍ତି।

ବୁଢ଼ିଆ ଶୋଇଛି, ସୁମି ତା ଗୋଡ଼ ମୋଡୁଛି। ସେ ପଚାରିଲା ସୁମି ଲୋ, ତତେ ଗୋଟେ କଥା ପଚାରିବି, ରାଗ କରିବୁ ନାହିଁ-

- କିଆଁ ରାଗ କରିବି, ପଚାରୁନୁ ?

- ପଚାରିଲେ, ମନ ଦୁଃଖ କରିବୁ ନାହିଁ ତ।

- ମନ ଦୁଃଖ କିଆଁ କରିବି, ତତେ ମୋ ରାଣ, କହ ?

ମୁଁ କଣ କହୁଥିଲି କି, ତୋ ବାପ, ସୁରୁଜାକୁ ଠିକ୍ କରିଥିଲା ତତେ ଦବ ବୋଲି। ସେ ତ ଥିଲାବାଲା ଘର। ତାର ତ ଝିଙ୍କଡ଼ ଘର ଅଛି। ତା ବାପ ବହୁତ ମାଛ ମାରେ। ଅମାପ ପଇସା। ସେଠି ତତେ ନଦେଇ, ମୋତେ କାହିଁକି ଦେଲା ? ମୁଁ ତ ଗରିବ, ମୋର ଘର ନାହିଁ କି, ଦ୍ୱାର ନାହିଁ। ଝାଟିମାଟିର ପଲ୍ଲାଟିଏ ମାରିଛି। କେଉଁଦିନ ବାଆବତାସ ହେଲେ ଘର ବି ଯିବ ମୁଁ ବି ଯିବି, ତୁ କଣ କରିବୁ ?..... ବେଳେବେଳେ ତୋରି କଥା ଭାବି ମୋ ମନ ଅସ୍ଥିର ହୋଇପଡ଼େ। ସୁମି କହିଲା - ସେମିତି, କଥା କହନାହିଁ। ଆମକୁ ଭଗବାନ ଭରସା। ସୁରୁଜାକୁ ଦବାଲାଗି ବାପ କଣ ମନା କରୁଥିଲା - ମୁଁ ବରଂ ମନାକଲି।

-କାହିଁକି ମନାକଲୁ ?

ମୁଁ ନିଜେ ଦେଖିଛି, ସୁରୁଜା ଯେତେ ତାଡ଼ିଆ ପିଏ। ତା ପାଖରେ କଣ ମଣିଷ ପଶିବେ ?

ବାପାକୁ ମୁଁ କହିଲି, ମୋର ପଇସା ଦରକାର ନାହିଁ। ଭଲ ମଣିଷ, ଟାଣୁଆ ଦେହ ଦେଖିକରି ଦେ।

ତୁ କାହିଁକି, ମନ ଦୁଃଖ କରୁଛୁ ? ତତେ ପାଇ ମୋ ମନ ଖୁସି। ତୁ ମୋର ଧନସମ୍ପତ୍ତି।!!

ବୁଢିଆ ହସିଦେଲା, ବା... ବା ତୁମ ସ୍ତ୍ରୀ ଜାତିକୁ କେହି ପାରିପାରିବେ ନାହିଁ। ମୁଁ ଯାଇ ଶୁଏ ରାତି ବହୁତ ହେଲାଣି। ସକାଳୁ ଉଠିଲେ ନିଜ ବେଉସାରେ ଯିବାକୁ ପଡ଼ିବ।

ରାତି ପାହି ସକାଳ ହେଲା। ବୁଢିଆ ତା ନିଜ ବେଉସାରେ ଗଲା।

ସୁମି ଘରଦ୍ୱାର ଝଟାପଟା କରି, ଗାଧୋଇ ପଡ଼ି, ଠାକୁରଙ୍କ ପାଖରେ ମୁଣ୍ଡିଆଟିଏ ମାରି ନ ଖାଇ ନପିଇ ଠାକୁରଙ୍କ ପାଖକୁ ଗଲା। ସ୍ୱାମୀର

କହିବା କଥା ତାର ମନେ ପଡୁଛି; ମାଛମାରି ଯାଇଥିବ ସମୁଦ୍ରକୁ, ଝଡ଼ି ବର୍ଷା ହେବ ଡଙ୍ଗା ଲେଉଟିବ ମୋ ଅବସ୍ଥା କଣ ହେବ ? ହେ ପ୍ରଭୁ ତୁମେ ମୋର ଭରଷା !! ବୁଢ଼ିଆକୁ ତୁମେ ରକ୍ଷ୍ୟା କର !

ସେ ଆଉ ଭାବିପାରିଲା ନାହିଁ। ପେଟରୁ ତାର କୋହ ଉଠିଲା। ଯେତେ ଚେଷ୍ଟା କଲେ ବି ମନ ବୁଝିଲା ନାହିଁ। ଉଠିଆସି ଦୁଆର ମୁହଁରେ ବସି କାନ୍ଦିବାକୁ ଲାଗିଲା। ନଖାଇ, ନପିଇ ସୁମି ସ୍ୱାମୀର ଆସିବା ବାଟକୁ ଚାହିଁ ରହିଲା।

ସୂର୍ଯ୍ୟ ଅସ୍ତ ହୋଇ ମୁହଁ ଅନ୍ଧାର ହେଲାଣି। ଏତେବେଳ ଯାକେ ସ୍ୱାମୀ ତାର ନ ଆସିବାରୁ ସେ ବ୍ୟସ୍ତ ହୋଇପଡ଼ି ପଲ୍ଲାର ଏପାଖ ସେପାଖ ହଉଛି।

ସମୁଦ୍ରକୂଳ ନିର୍ଜନ ସ୍ଥାନ, ଅନ୍ଧାର। ମୁହଁକୁ ମୁହଁ ଦେଖାଯାଉ ନାହିଁ। ବର୍ଷା ଟୁପୁରୁ ଟୁପୁରୁ ପଡୁଛି। ସମୁଦ୍ର ପାଣି ଢେଉର ସାଇଁ ସାଇଁ ଗର୍ଜନ - ଜାଗା ସତେ କି ଫାଟି ପଡୁଛି। କୁଆ କୋଇଲିର ରାବ ନାହିଁ। କଣ କରିବ? ଚାରିଆଡ଼ ଶୂନ୍ୟ ଦେଖାଯାଉଛି। ସେ ପଲ୍ଲାର ତାଟି କବାଟ ଦେଇ ଭିତରେ ଡିବି ଆଲୁଅ ଜାଳି ବସି ରହିଲା।

ରାତି ଘଡ଼ିଏ ହେଲାଣି। ବୁଢ଼ିଆ ଓଦା ସର ସର ହୋଇ ତାଟି କବାଟକୁ ବାଡ଼େଇଲା।

ମୁଁ, ଶୀଘ୍ର ଫିଟା। ଓଦାରେ ମୋ ଦେହ ହାତ କୋହ୍ଲ ମାରିଯାଉଛି। ଆଜି କି ଯୋଗରେ ଘରୁ ବାହାରିଥିଲି ଗୋଟାଏ କେରାଣ୍ଡି ବି ନାହିଁ। ଖାଲି ତିନ୍ତି ବୁଡ଼ିବା ସାର।

ସ୍ୱାମୀର ପାଟିବାରି ସେ ତାଟି କବାଟ ଖୋଲି ଚାହିଁଦେଲା - କଣ ଗୋଟାକଯାକ ତିନ୍ତିଛୁ ?

ହଉ ନେ ଗାମୁଛା ପୋଛି ପୋଛି ହୋଇ ଲୁଗାଟି ପାଲଟିପକା। ମୁଁ ଚୁଲି ଜାଳିଦିଏ, ତୁ ଚୁଲି ପାଖରେ ବସି ନିଆଁ ପୁଉଁ। ମୁଁ ଭାତ ବାଢ଼ିଆଣେ।

ବୁଢିଆ ଚମକି ପଡ଼ି କହିଲା, କିଲୋ ଭାତ କେଉଁଠୁ ଆଣିଲୁ ?

ଆମେ ତ ମୂଲିଆ ମୁଣ୍ଡ ନିତି ଆଣିଲେ ନିତି ଖାଇବା।

ସତ କହିବୁ, ଆଜି କଣ ସକାଳେ ତୁ ଖାଇନୁ କି ତୋ ମୁହଁ ସେଇ ଭଳିଆ ଦେଖାଯାଉଛି। ଦେହ କଣ ହଉଛି କି ?

ମଲା ମୋ ଦେହ କାହିଁକି କଣ ହେବ ? ମୋ ମନ କାହିଁକି ଭଲ ଲାଗିଲା ନାହିଁ। ଗୁଣ୍ଡାଏ ଖଣ୍ଡେ ଆଣି ଖାଇଲି ଆଉ ଭାତ ଥୁଆ ହୋଇଛି।

ଯାହା ହେଉ ଭଗବାନ ଆଜି ଦିନଟା ଚଳେଇ ଦେଲେ।

ସବୁତକ ସେ ବାଢ଼ି ଆଣିଲା ଦୁଇ ପ୍ରାଣୀ ଖାଇବସିଲେ।

ସୁମି କହିଲା, ଜାଣିଲୁ ତୁ ଆଜି ଏତେ ଡେରିକଲୁ ଆସିବାକୁ। ମୋତେ ଭାରି ଡର ଲାଗିଲା। ତୋ କହିବା କଥା ମୋର ମନେ ପଡ଼ିଲା।

ବୁଢିଆ ହସିଲା। ମଲା - ବର୍ଷାଦିନ ସମୁଦ୍ରକୂଳ କଥା - ମୁଁ ଏବେ କଣ କରିବି ଆମକୁ ଭଗବାନ ଭରସା। ଆମର ଏଠି କିଏ ଅଛି - ମା ନା ବାପ୍ ?

ତୁ ଯଦି ଏମିତି ହବୁ ମୋର କଣ ଉପାୟ୍ ?

x x x x x

ଆଜି ବୁଢିଆ ଯାଇଛି ମାଛମାରି - ବହୁତ ଦୂର। ଫେରିଲା ବେଳକୁ ମଝି ସମୁଦ୍ରରେ ଆସିଲା ପବନ, ମେଘ, ଝଡ଼ିବତାସ। ଚାରି ପାଞ୍ଚଟି ଡଙ୍ଗା ଯାଇଛି ମାଛମାରି।

ସମୁଦ୍ର ତେଉ ଜୋର୍‌ରେ ଆସୁଛି। ଡଙ୍ଗାକୁ ନୋଳିଆମାନେ ସମ୍ଭାଳି ପାରୁନାହାନ୍ତି, ପ୍ରଭୁଙ୍କୁ ଡାକୁଛନ୍ତି।

ଗୋଟାଏ ଲହଡ଼ା ଆସିଲା, ଆଖି ପିଛୁଡାକେ ଡଙ୍ଗାଯାକ ସମୁଦ୍ର ଗର୍ଭରେ ଲୀନ ହୋଇଗଲା....!

ବୁଢିଆ ଚିରଦିନ ପାଇଁ ସମୁଦ୍ରର ଅତଳ ଗର୍ଭରେ ଲୀନ ହୋଇଗଲା !!

...ସୁମି ଚାହିଁଛି ବୁଢିଆ ଆସିବ... ମାଛ ଆଣିବ। ଗତକାଲି ପରି ଦୁହେଁ ଏକ ସଙ୍ଗରେ ବସି ଖିଆପିଆ କରିବେ, ସୁଖଦୁଃଖ ହେବେ। କିନ୍ତୁ ଭାଗ୍ୟର ବିଡ଼ମ୍ବନା -

ତାର ଆସିବା ବେଳ ଗଡ଼ିଗଲାଣି। କାହିଁ ଏତେବେଳ ଯାଏ ତ ଆସିଲା ନାହିଁ। ତାର ମନ ଅସ୍ଥିର ହୋଇଉଠିଲା। ସାରା ରାତି ତାକୁ ନିଦ ନାହିଁ... ସକାଳ ହେଲା -ସେ ଖାଲି ଛଟପଟ ହେଲା ଭଗବାନଙ୍କୁ ଡାକୁଥାଏ ସତରେ ବୁଢିଆ ଫେରିବ ?

ସୁମି ଧାଇଁଗଲା ସମୁଦ୍ରକୂଳକୁ ସ୍ୱାମୀକୁ ଖୋଜିବାକୁ। ସମୁଦ୍ରକୂଳରେ ପହଞ୍ଚି ସେ ଯାହା ଦେଖିଲା ନିଜକୁ ବିଶ୍ୱାସ କରି ପାରିଲା ନାହିଁ - ବୁଢିଆର ଶବ ପଡ଼ିଛି ! ଲୋକମାନେ ଘେରି ଦେଖୁଛନ୍ତି। ତାର ମୁଣ୍ଡ ଘୂରିଗଲା !



# ସ୍ୱପ୍ନ ସଂସାର

ସମୁଦ୍ରକୂଳ, ଚାରିଆଡ଼େ ଜନଗହଳି । ସୂର୍ଯ୍ୟ ଅସ୍ତ ହୋଇ ଆସୁଛନ୍ତି । କେତେ ସ୍ତ୍ରୀ ପୁରୁଷ ହାତ ଧରାଧରି ହୋଇ ଚାଲିଛନ୍ତି । ଛୋଟ ପିଲାମାନେ ସମୁଦ୍ର ଢେଉକୁ ଦେଖି ଖୁସି ହୋଇ ନାଚୁଛନ୍ତି । ସମୁଦ୍ରର ଲହଡ଼ିରେ ସେ, ଜାଗା ସାଇଁ ସାଇଁ ଗର୍ଜନ କରୁଛି । ବେଞ୍ଚ ଉପରେ ବସିଛି ଧିରେନ୍ଦ୍ର ମୁହଁ ଶୁଖାଇ । ସେ, ଚାରିଆଡ଼କୁ ଚାହୁଁଛି । ବାଳଗୁଡ଼ାକ ଫୁରୁ ଫୁରୁ ହୋଇଉଡୁଛି । ସତେକି, କେଉଁ ଦିନଠାରୁ ତେଲ ବାଜି ନାହିଁ । ତାର ଅମାନିଆ ମନଟା ଟିକେ ହେଲେ ବୁଝୁନାହିଁ । ସେ ଧିରେ ଧିରେ ଘର ମୁହାଁ ହେଲା....

ଘରେ ପହଞ୍ଚି ଟେବୁଲ୍ ଚେୟାର ପାଖରେ ବସିପଡ଼ିଲା କାଗଜ କଲମ ଧରି।

ସପନା ଚାକର ଘର ଭିତରକୁ ପଶି ଜଳଖିଆ ଟେବୁଲ ଉପରେ ଥୋଇ ଦେଇ କହିଲା - ବାବୁ, ଜଳଖିଆ ରହିଲା ଖାଇବ ।

ତତେ ମୁଁ କେତେ କହିଲିଣି - ମୋ ପାଇଁ ଜଳଖିଆ କରିବୁ ନାହିଁ ।

ହଁ ବାବୁ, ତୁମେ ମନାକରୁଛ । କିନ୍ତୁ, ମୁଁ କଣ କରିବି ? ମୋର ମନଟା ଜମା ବୁଝୁନାହିଁ ।... ବାବୁ, ନିଜ ଦେହକୁ ଦେଖ କଣ ହେଲାଣି ? ଅଧେ ସମୟ ଓପାସ ରହିଲେ ଗଲା ଜିନିଷ କଣ ଫେରି ଆସିବ ?

ଧିରେନ୍ଦ୍ର ନଖାଇ ଟେବୁଲ ପାଖରୁ ଉଠିପଡ଼ି, ନିଜର ଶରୀରଟାକୁ ଖଟ ଉପରେ ଲମ୍ବାଇ ଦେଲା । ମୁଣ୍ଡଟା ଲାଗିଲା ପଥର ପରି ଓଜନିଆ । ସତେକି, ଆଖିବାଟେ କୁଳୁକୁଳିଆ ପୋକ ବାହାରି ପଡୁଛି । ସେ, ମନେ ମନେ ଭାବୁଛି, ସତକଥା ସପନା କହିଛି, ଯିବା ଜିନିଷ ଫେରିଆସେ ନାହିଁ । ରୀତା ଚାଲିଗଲା ମୋତେ ଦଗାଦେଇ । ମାତ୍ର ମୁଁ, ବଞ୍ଚିଛି । ବୋହି ଯାଉଥିବା ଲୁହକୁ ବାଁ ହାତରେ ପୋଛି ଦେଇ ସେ, ଖଟ ଉପରେ ପଡ଼ିରହିଲା ।

ବାହାର ପଟରୁ କବାଟ ଠକ୍ ଠକ୍ ହେଲା । ସପନା କବାଟଟାକୁ ଖୋଲିଦେଲା ।

ଧିରେନ୍ଦ୍ରର ସାଙ୍ଗ ପ୍ରସନବାବୁ ଘର ଭିତରକୁ ପଶି ଆସି ସପନାକୁ ପଚାରିଲେ, ବାବୁ କାହିଁ ?

କଣ କରିବି ବାବୁ, ଦେଖିବେ ଯାଆନ୍ତୁ ଟେବୁଲ ଉପରେ ଜଳଖିଆ ଥୁଆ ହୋଇଛି। ଯେତେ ମୁଁ, ଡାକିଲି ଖାଇଲେ ନାହିଁ। ଖଟ ଉପରେ ଶୋଇଛନ୍ତି। ବାବୁ, ଆପଣ ତ ଆସିଛନ୍ତି, ଟିକେ ଡାକି ବୁଝେଇ ସୁଝେଇ ଖୁଆନ୍ତୁ?

ପ୍ରସନ୍ନ ଧିରେନ୍ଦ୍ର ଶୋଇବା ଖଟ ଉପରେ ବସି ହଲାଇ ଦେଲା, ଆରେ, ଉଠ ଶୋଇଛୁ କଣ ?

ପ୍ରସନ୍ନର ପାଟି ବାରି ଧିରେନ୍ଦ୍ର ଉଠିବସିଲା।

- ଚାଲ, ଖାଇବୁ ।..

- ନାଁ ଭାଇ, ମୋତେ ଜମା ବଳାନା ଖାଇବାକୁ। ମୋର ଜମା ଇଚ୍ଛା ହଉନାହିଁ।

- ଆଚ୍ଛା ଧିରେନ୍ଦ୍ର, ତୁ ତ, ପିଲା ହୋଇନୁ। ତୁ, ଜଣେ ବିଶିଷ୍ଟ ଲେଖକ ଏବଂ ଜଣେ ଅଧ୍ୟାପକ। କଣ ମୁଁ ତତେ ବୁଝାଇବି। ଆଜକୁ ଚାରିମାସ ହେଲା, ନଖାଇ ନ ପିଇ ଦେହ ତୋର କଣ ହେଲାଣି।

- ପ୍ରସନ୍ନ ତୁ ବୁଝିପାରିବୁ ନାହିଁ ମୋର ମନର ବେଦନା। ଗୀତାକୁ ମୁଁ କଣ ଭୁଲିପାରିବି ? ମୁଁ କଣ ଜାଣିଥିଲି ସେ ମୋତେ ଧୋକା ଦେଇ ସେହି ସମୁଦ୍ରର ଢେଉ ଭିତରକୁ ଚାଲିଗଲା ? ସେ ସିନା ଯାଇଛି, କିନ୍ତୁ ମୋର ଶରୀରରେ ସେ ଜୀବନ୍ତ ହୋଇ ରହିଛି।

- ହଉ ତୁ ଚାଲିଲୁ ଖାଇବୁ।

ପ୍ରସନ୍ନ ବାବୁ ଧିରେନ୍ଦ୍ରର ହାତକୁ ଧରି ଟେବୁଲ୍ ପାଖରେ ବସେଇଲେ।

ଧିରେନ୍ଦ୍ର ଟେବୁଲ ପାଖରେ ଖାଇ ବସିଛି, ସ୍ତ୍ରୀ କଥା ତାର ମନେପଡ଼ିଗଲା। ଖାଇବା ପାଖରେ ବସି କେତେ ସେ ଖୁଆଏ। ସେ ଯାଇଛି,

ସେହିଦିନଠାରୁ ସବୁ ମୋର ଯାଇଛି । ତାର ପେଟ ଭିତର ଘାଣ୍ଟିଚକଟି ହୋଇପଡ଼ିଲା । ଗୁଣ୍ଡାଏ ଦିଗୁଣ୍ଡା ଖାଇଚିକି ନାହିଁ ଉଠିପଡ଼ିଲା ।

ସପନା କହିଲା - ବାବୁ, ଦେଖିଲେ ତ ନିଜ ଆଖିରେ ? ମୁଁ କଣ କରିବି ? କାହା ଆଗରେ ବା କହିବି ? ବାବୁଟି ପିଲାଦିନରୁ ବଡ଼ ଦୁଃଖୀ ଆଜ୍ଞା । ତା ସାଙ୍ଗରେ ମୁଁ ମଧ୍ୟ ଦୁଃଖୀ । ଆଠବର୍ଷ ହୋଇଥିଲା ବାପ ଓ ମା, ଆଗଲି ପଛଲି ହୋଇ ଚାଲିଗଲେ । ମୁଁ ତାଙ୍କ ଘରେ ଥାଏ । ବନ୍ଧୁବାନ୍ଧବ ସାଇ ପଡ଼ିଶା କେହି ଛୁଆଟା ମୁହଁକୁ ଆଡ଼ ଆଖିରେ ଚାହିଁଲେ ନାହିଁ, ସେଇ ଘରେ ରହି, ଏହି ହାତରେ ଖୋଇ, ପେଇ, ପେଟ ଉପରେ ଶୁଆଇ ବଡ଼େଇଲି ।

ଭଗବାନ ମଣିଷ କଲେ । ମନକୁ ଚାହିଁ ଝିଅଟିଏ ବି, ପାଇଥିଲେ । ସୁଖ ସଂସାର କଲାବେଳକୁ ବିଧାତା ପାହାର ଦେଲା ।

ସପନା କହୁଥାଏ, ଆଖି ତାର ହୋଇଯାଉଥାଏ ଛଳ ଛଳ ।

ସପନା କହିଚାଲିଛି, ପ୍ରସନ୍ନବାବୁ ତା ମୁହଁକୁ ଚାତକ ପରି ଚାହିଁ ରହିଛନ୍ତି ।

- ଆଛା ସପନା, ତତେ ଗୋଟାଏ କଥା ପଚାରିବି ?

- କି କଥା ବାବୁ ?

- ଧିରେନ୍ଦ୍ର କଣ ସବୁଦିନେ ସମୁଦ୍ରକୂଳକୁ ଯାଏ ?

- ବାବୁଙ୍କର ଯେତେ କାମ ଥିଲେ ମଧ୍ୟ ପାଞ୍ଚଟା ବାଜିଲେ ସମୁଦ୍ରକୂଳ ଯିବେ । ସାତଟା ବାଜିଲେ ଘରକୁ ଫେରିବେ ।

- ହଉ ସପନା ମୁଁ ଯାଉଛି । ତୁ ଟିକେ ବୁଝାବୁଝି କରୁଥିବୁ । ଭଗବାନ ଯାହାକୁ ଦୁଃଖ ଦିଅନ୍ତି, ଏମିତି ସର୍ବଶ୍ୱାନ୍ତ କରିଦିଅନ୍ତି ।

ଧିରେନ୍ଦ୍ରର ମନର ଅବସ୍ଥା ଦିନକୁ ଦିନ ଜଟିଳ ହୋଇଉଠିଲା । ଯେଉଁଠି ବସିଲା ମୁହଁ ଶୁଖାଇ । ଗୀତାର ଚମ୍ପା କଢ଼ି ପରି ଲାବଣ୍ୟ ରୂପ ତାର

ଆଖି ଆଗରେ ନାଚିଉଠୁଛି । ସେ, ଦଶଟାରେ କଲେଜ ଯାଏ । ଚାରିଟାରେ ଘରକୁ ଫେରିଲେ ବହିପତ୍ର ଦୁଇଖଣ୍ଡ ଟେବୁଲ ଉପରେ ଫୋପାଡ଼ି ଦେଇ ନଖାଇ ନ ପିଇ ପଳାଏ ସେହି ସମୁଦ୍ରର ବାଲିଚର ଉପରକୁ । ସତେକି, ଏହି ସମୁଦ୍ର ତାର ଜୀବନର ସାଥୀ !!

ତାର ମନେ ପଡ଼ିଯାଏ ଗୀତା କଥା । ପ୍ରତିଦିନ ଏହି ସମୁଦ୍ର କୂଳେ, କେତେ ହାତ ଧରା ଧରି ହୋଇ ହୋଇ ନ ବୁଲିଛନ୍ତି ଏବଂ କେତେ ଦୁଃଖ ସୁଖ ନ ହୋଇଛନ୍ତି ।

ତାର ନିଜ ଜୀବନ ପ୍ରତି ଆସେ ବିତୃଷ୍ଣା । ସେ, ଭାବେ କଣ ପାଇଁ ଭଗବାନ ମୋତେ ବଞ୍ଚାଇଛନ୍ତି । ପିଲାଦିନରୁ ବାପ ମାଙ୍କର ସ୍ନେହ ଶ୍ରଦ୍ଧା ଜାଣିଲି ନାହିଁ । ଯାହାକୁ ବା ଦେଇଥିଲେ, ତାର ସ୍ନେହ ବୋଳା କଥା, ଏବଂ ରୂପରେ ମୁଁ ନିଜକୁ ଗର୍ବ ମନେକରୁଥିଲି । ଭାବୁଥିଲି ବାପ ମାଙ୍କ ଆଶୀର୍ବାଦରୁ ମୁଁ ଗୀତାକୁ ପାଇଛି । ଭଗବାନ ସେତକ ସହି ପାରିଲେ ନାହିଁ ? ମୋ ପାଖରୁ ଛଡ଼େଇ ନେଲେ ? ଆଉ ଏ ଜୀବନ କୋଉ ସୁଖ ଆଶାରେ ବଞ୍ଚି ରହିବି । ମୋର ସୁଖ ଦୁଃଖରେ କିଏ ବା ଭାଗି ହେବ ? କେବଳ ବାପ, ମାର ସ୍ନେହଶ୍ରଦ୍ଧା ଦେଇ ଯିଏ ଲାଳନ ପାଳନ କରିଥିଲା, ଏବଂ କରୁଛି, ସେହ ବୁଢ଼ାଦିନେ ମୋ ପାଇଁ ଘାଣ୍ଟି ହେଉଛି ।

ସପନା ପ୍ରତି ତାର ଆସିଲା ଦରଦ !

ରାତି ପାହିଲେ ମାଘସପ୍ତମୀ । ଧିରେନ୍ଦ୍ରକୁ ରାତିଯାକ ନିଦ ନାହିଁ । ମନଟା ତାର ଆଉଟି ପାଉଟି ହେଉଛି ।

ଗଲାବର୍ଷ ମାଘସପ୍ତମି କଥା ତାର ମନେପଡ଼ୁଛି । ଏହି ମାଘ ସପ୍ତମି ଦିନ ଗୀତା ତାକୁ ଜବରଦସ୍ତି ଉଠାଇ ସମୁଦ୍ର କୂଳକୁ ନେଇଯାଇଥିଲା, ସୂର୍ଯ୍ୟଉଦୟ ଦେଖିବାକୁ ଏବଂ ସପ୍ତମୀ ବୁଡ଼ପକାଇବାକୁ । ସେଦିନ ଲୋକାରଣ୍ୟ । ସେ ଯାଇଛି, ସୂର୍ଯ୍ୟ ଉଦୟ ଦେଖି ଦେଖି ଗିତା ଗଭୀର ପାଣି ପାଣି ଭିତରକୁ ଚାଲି ଯାଇଛି - କରେଣ୍ଟ ତାକୁ ଟାଣି ନେଇଛି । ସେଦିନର ସୂର୍ଯ୍ୟଉଦୟ ଆଉ ବୁଡ଼ ପକା ମନରୁ ଲିଭିନାହିଁ ।

ରୀତା କଥା ମନେପଡ଼ି ତାର ମନ ଅସ୍ଥିର ହୋଇଉଠିଲା । ରାତି ଅଳ୍ପ ଅଳ୍ପ ଅଛି ସେ, ବାହାରକୁ ଆସିଲା । ବାହାରେ ପ୍ରବଳ ଶୀତ । ଧିରେନ୍ଦ୍ର ଘୋଡ଼େଇ ପୋଡ଼େଇ ହୋଇ ବାହର ପିଣ୍ଡାରେ ବସିଲା । ଦେହଟା ଶୀତରେ ଶିରି ଶିରେଇ ଉଠୁଛି । ଆକାଶକୁ ଚାହିଁଲା କୁଆଁ ତାରା ପଡ଼ିଛି । ରାତି ପାହିବା ଉପରେ । ରାସ୍ତାଟା ଜନଗହଳିରେ ଭିଡ଼ । ତାକୁ ଯେପରି ଲାଗିଲା । ରୀତା ହାତଧରି ଡାକୁଛି ଆସ, ଆଜି ମାଘସପ୍ତମୀ ସମୁଦ୍ର କୂଳକୁ ଯିବା ସୂର୍ଯ୍ୟ ଉଦୟ ଦେଖି ବୁଡ଼ ପକାଇ ଆସିବା ।

ଧିରେନ୍ଦ୍ର, ପିଣ୍ଡାରୁ ଉଠିଲା, ଡାକିଲା ସପନା, ସପନା ?

- ଆଜ୍ଞା କଣ ?

- ଘରେ କବାଟ ଦେ, ମୁଁ ଯାଉଛି ସମୁଦ୍ର କୂଳକୁ ସୂର୍ଯ୍ୟ ଉଦୟ ଦେଖି ଗାଧୋଇ ଆସିବି ।

- ବାବୁ, ଭାରି ଶୀତ ନଗଲେ ହୁଅନ୍ତା ନାହିଁ ?

- ନାଁ ମୁଁ ଯାଉଛି ।

ସେ, ଗଲା ସମୁଦ୍ରକୂଳକୁ -

ସପନା, ଭିତରୁ କବାଟ ଦେଇ ଘୋଡ଼େଇ ପୋଡ଼େଇ ବସିଲା । ତାର କେତେ ଚିନ୍ତା କେତେ ଭାବନା, ହେ, ପ୍ରଭୁ ତୁମେ ଭରସା ।

ସମୁଦ୍ର କୂଳରେ ବହୁତ ଭିଡ଼ । ଲକ୍ଷ ଲକ୍ଷ ଲୋକ ବୁଡ଼ ପକାଉଛନ୍ତି । ଆଜି ସମୁଦ୍ରର ଗର୍ଜନ ସବୁଦିନଠାରୁ ବେଶୀ । ଲହଡ଼ି ଥର ଥରକେ ଆସୁଛି ପ୍ରଖର ଗତିରେ । ନୋଳିଆମାନେ ଲୋକମାନଙ୍କୁ ବୁଡ଼ ପକାଇ ସମୁଦ୍ରରେ ଉପରକୁ ଛାଡ଼ି ଦେଉଛନ୍ତି । ନାରୀମାନଙ୍କର ହୁଳହୁଳି ଶବ୍ଦରେ ସମୁଦ୍ରକୂଳ କମ୍ପୁଛି ।

ସମୁଦ୍ର ପାଣି ଭିତରେ ଧିରେନ୍ଦ୍ର ଠିଆ ହୋଇ ସୂର୍ଯ୍ୟଙ୍କୁ ଚାହିଁଛି । ଆଖିରୁ ତାର ବୋହି ଯାଉଛି ଧାରା ଶ୍ରାବଣ ପରି ଅଜସ୍ର ଲୁହ । ରିତାର ସମସ୍ତ ସ୍ମୃତି ଧୋଇ ହୋଇ ଯାଉଛି !!



# ଜୀବନର ଛନ୍ଦ

ବିଦିଆ ଯେତେବେଳେ ମରିଗଲା ତାର ଦୁଇଟି ପୁଅ ହୋଇଥିଲେ । ମୁରଲୀକୁ ପାଞ୍ଚବର୍ଷ, ପ୍ରଫୁଲ୍ଲକୁ ତିନିବର୍ଷ । ମଣି ସେତେବେଳକୁ ଯୁବତୀ ।

ବିଦିଆର ସମ୍ପତ୍ତି ବାପ ଅମଳର ଦୁଇ ଚାରି ଗୁଣ୍ଠ ଧାନ ଜମି ଥିଲା । ଡିଅ ଉପରେ ବଖୁରିଏ ମାଟିଘର । ଦୁଇ ଦିନରେ କି ଅଚାନକ ଜର ଆସିଲା । କେହି ଜାଣି ପାରିଲେ ନାହିଁ । ରାତି ଅଧବେଳକୁ ସନ୍ନିପାତ ଧରିଲା । ପାହାନ୍ତି ପହରକୁ ବିଦିଆ ସେ ପୁରକୁ ବାଟକାଟିଲା । ସକାଳୁ ଗାଁ ଲୋକ ଶୁଣିଲେ, ବିଦିଆ ମରିଯାଇଛି । ସେମାନେ ଘରୁ ନେଇ ଶବସତ୍କାର କଲେ । ମଣି ବାଡ଼େଇ ହୋଇ କାନ୍ଦୁଛି । ପିଲାଙ୍କୁ ଦେଖିଲେ, ତାର ଛାତି ଭିତର ଫାଟିପଡୁଛି । ଆଜି ତାର ସବୁ ଯାଇଛି ।

ସେ, ଆଖିରୁ ଲୁହ ପୋଛିଦେଇ ମନକୁ ଦୃଢ଼ କରି ଭାବିଲା - ଭାଇ ଭଗାରୀରେ ଘର କରିଛି । ଶୁଦ୍ଧିକ୍ରିୟା କରିବାକୁ ହେବ - ଅଳ୍ପ ବହୁତରେ । ସେ, ଆଗପଛକୁ ନ ବିଚାରି ଶ୍ୱଶୁର ଅର୍ଜିତ ସମ୍ପତ୍ତିରୁ ଗୁଣ୍ଠେ ବିକି, ସ୍ୱାମୀର ଶୁଦ୍ଧ ଘର ଶେଷ କଲା ।

ତାର ଆଜି ମନରେ କେତେ ଚିନ୍ତା । ପିଲାଦୁଇଟିଙ୍କୁ ଧରି କିପରି ଚଳିବି ? ଶ୍ୱଶୁର ଘରେ ବୋହୁ ହୋଇଥିଲି - ଦାଣ୍ଡକୁ ବାହାରି ନଥିଲି । ସିଏ ତ, ତା ବାଟ ଧରିଲା । ମୁଁ ମାଇପ ଲୋକ କଣ କରିବି ? ଏଥରକ ମୋତେ ଦାଣ୍ଡକୁ ବାହାରିବାକୁ ପଡ଼ିବ । କଥାରେ ଅଛି - ପେଟ ପୋଷ, ନାହିଁ ଦୋଷ । ପେଟ ପୋଷିବାକୁ ଲାଜ କଣ ? ପିଲା ଦୁଇଟି ବଡ଼ ହୋଇଗଲେ ମୋର ଦୁଃଖ ଯିବ ।

ମଣି ଗାଁ ଯାକର କାମ କରେ । କାହାର ଧାନକୁଟେ ତ କାହାର ବିରି ବାଟେ । ଯେତେବେଳେ ଗାଁ ଯାକର ପୁନିଅ ପରମ ହୁଏ ମଣିକି, ଡାକରା ଆସେ ।

ମଣି ଦାଣ୍ଡରେ ଯାଏ ତଳକୁ ମୁହଁ ପୋତି । କାହାକୁ ଦିନେ ମୁହଁ ଟେକି ଚାହେଁ ନାହିଁ । ସେ, ଏହି ପରି ଗାଁ ଲୋକଙ୍କୁ ଧରି ଦୁଃଖ, ସୁଖରେ ପିଲା ଦୁଇଟିଙ୍କୁ ଚଳାଉଥାଏ ।

ପିଲା ଦୁଇଟି ପାଠପଢ଼ିବାକୁ ହେଲେଣି । ମଣି ଛାଡ଼ିଲା ଗାଁ ଚାଟଶାଳୀ ଅବଧାନଙ୍କ ପାଖରେ । ଅବଧାନ ଭଲ ଲୋକ - ସେ, ମନଦେଇ ପିଲାଙ୍କୁ ପାଠ ପଢ଼ାଉଛନ୍ତି ।

ମୁରଲୀ ଅବଧାନଙ୍କୁ କଥା ଶୁଣେ ନାହିଁ କି ପାଠପଢ଼େ ନାହିଁ । ଭାରି ଦୁଷ୍ଟାମି କରେ । କୋଉଠି ଆମ୍ବଗଛରେ ତ, କେଉଁଠି ପିଜୁଳି ଗଛରେ ଚଢ଼େ । ଆଜି ଏ ପିଲାକୁ ମାରିଲାଣିତ କାଲି, ସେ ପିଲାକୁ ମାରିଲାଣି । ମୁରଲୀର ଦୁଷ୍ଟାମି ଦିନକୁ ଦିନ ବଢ଼ିଲା । ଅବଧାନ ଆଉ ସମ୍ଭାଳି ପାରିଲେ ନାହିଁ । ମଣି ଦୁଆରେ ନିତି ଫେରାଦ । ସେ ଘର କାମସାରି ପୁଅ ଦୁଇଟିଙ୍କୁ ଚାଟଶାଳୀରେ ଛାଡ଼ି ଆସି ଘରେ ଶୋଇଛି ।

ଦିନ ତିନିଟା ? ଅବଧାନ ମୁରଲୀକୁ ଧରିଆଣି କବାଟ ବାଡ଼େଇଲେ । ମଣି ମାଉସୀ ଅଛ କି ?... ସେ, ଅବଧନାଙ୍କ ପାଟି ବାରି କବାଟ ଫିଟାଇ ଦେଇ କହିଲା - କଣ ଅବଧାନେ ?

- ନିଅ ? ତୁମ ଗୁଣସାଗର ପୁଅକୁ ମୁଁ ଆଉ ସମ୍ଭାଳି ପାରିବି ନାହିଁ । ଯାହା ଦେଇ ପାଠହବ ନାହିଁ, କାହିଁ କି ପଇସା ଖର୍ଚ୍ଚ କରିବ ?.. ପ୍ରଫୁଲ୍ଲଟି ଭଲ ପଢୁଛି, ଯାହା ସେ କରିବ ।

ମଣି ରାଗରେ ପୁଅକୁ ଘୋଷାରି ଆଣି, ତିନି ଚାରିପାହାର ବାଡ଼େଇଲା । ମୁରଲୀ କାନ୍ଦି ଗଡୁଛି । ଅବଧାନ ଚାଲିଗଲେ । ସେ ପୁଅପାଖରେ ବସିଛି । ଆଖିରୁ ତାର ଲୁହ ଟପ୍ ଟପ୍ ହୋଇ ଗଡ଼ି ପଡୁଛି ।

ମୁରଲୀ ଦେଇ ଆଉ ପାଠ ପଢ଼ା ହେଲା ନାହିଁ । ଗଣ୍ଡେ ଖାଇ ସେ ବୁଲୁଥାଏ । ମା ଭାଇଙ୍କ ସାଙ୍ଗରେ ତାର ରାତି ପାହିଲେ ଝଗଡ଼ା । ଦିନକୁ ଦିନ ପ୍ରକୃତି ତାର ଖରାପ ଆଡ଼କୁ ଗତିକଲା ।

ମୁରଲୀ କମିବାଢ଼ି ଦେଖିଲା ପରି ହୋଇଗଲାଣି । ମାତ୍ର ଘର କଥା ସେ ବୁଝେ ନାହିଁ କି ମା କହିଲେ କାନରେ ପକାଏ ନାହିଁ ।

ମଣି ବୁଢ଼ୀ ହେଲାଣି । ଆଉ କାମ ଦାମକୁ ପାରୁନାହିଁ । ଆଜି ତାକୁ ଭାରି ଜର । ପଖାଳ ଦୁଇଟା ଥିଲା ପିଲାଏ ଖାଇଛନ୍ତି । ମଣି ସଉପ ଖଣ୍ଡେ

ପକାଇ, ଘୋଡ଼େଇ ପୋଡ଼େଇ ଶୋଇଛି। ଗାଁର ଦୁଲା ମାଉସୀ ଆସି କବାଟ ବାଡ଼େଇଲା ମଣି ଅଛୁକିଲୋ ? ମାଉସୀର ପାଟିଶୁଣି ସେ, କବାଟ ଫିଟାଇ ଘୋଡ଼େଇ ଘାଡ଼େଇ ହୋଇ ବସିଲା।

ଦୁଲାମାଉସୀ ପଚାରିଲା - ହଇଲୋ, ତୋ ଦେହ ଭଲ ନାହିଁକି ?

- ହଁ ମାଉସୀ, ମୋତେ କାଲି ରାତିରୁ ଜର।

- ହଇଲୋ, ତୁତ ବୁଢ଼ୀ ହେଲୁଣି କାମକୁ ପାରୁନାହୁଁ। ମୁଁ କଣ କହୁଛି ମୁରଲୀକୁ ହାତକୁ ଦିହାତ କରି ଘରକୁ ବୋହୂଟିଏ ଆଣେ ?

ମଣି କାନ୍ଦି ପକାଇଲା। ମାଉସୀ ତୁ କହୁଛୁ, ମୁରଲୀକୁ ବାହା କରିବାକୁ, ତାକୁ ପୋଷିବ କିଏ ? ମୋ ଦୁଃଖରେ ତ, ସାହା ଭରସା ନାହିଁ, ସିଏତ, ଛତରା ବଜାରି ଲୋକଙ୍କ ସାଙ୍ଗରେ ମିଶିଲା। କୋଉଠି ଜୁଆ ଖେଳିଲାଣି ତ, କେଉଁଠି ତାଡ଼ିଆ ପିଇଲାଣି। ଘରେ ଆଉ ପଶିବା କଥା ନାହିଁ। ଯାହାର ଝିଅଟିଏ ଆଣିବି କୋଉ ସୁଖ ପାଇଁ ? ତା ସୁଖ ଦେଖିବି ନାଁ, ଦୁଃଖ ଦେଖିବି। ମୋ କପାଳରେ ଯାହାଥିବ ଭୋଗ କରୁଛି, କରିବି। ପ୍ରଫୁଲ୍ଲଟି ଭଲ ପଢୁଛି। ଭଗବାନ ଯଦି ମଣିଷ କରିବେ ବାପର ନାଁ ରଖିବ।

ଦୁଲା ମାଉସୀ କହିଳା - ହଁ ଲୋ ମଣି, ତୁ ଯାହା କହିଲୁ ଠିକ୍ କଥା। ପ୍ରଫୁଲ୍ଲଟିକୁ ପ୍ରଭୁ ମଣିଷ କରନ୍ତୁ । ବିଦିଆର ନାଁ ରଖୁ।

ପ୍ରଫୁଲ୍ଲ ବଡ଼ ଭାଇକୁ ଦେଖି ବ୍ୟସ୍ତ ହୋଇପଡ଼େ। ରାତିରେ ସେ, ଶୋଇ ପାରେ ନାହିଁ। ମନେ ମନେ ଭାବେ ଭାଇ ମଣିଷ ହେଲେ ନାହିଁ। ତାଙ୍କ ଚିନ୍ତାରେ ମା, କାନ୍ଦି କାନ୍ଦି ଶୁଖି କଣ୍ଟା ହେଲାଣି। ସତେ ଭଗବାନ ମୋତେ ମଣିଷ ପରି ମଣିଷ କରିବେ, ଘରର ଦୁଃଖ ଯିବ।

ସେ ବୃତ୍ତିପାଇ ବି.ଏ. ପଢୁଛି।

ପ୍ରଫୁଲ୍ଲ ବି.ଏ. ପରୀକ୍ଷା ଦେଇ ଘରକୁ ଆସିଛି। ଆଜି ତାର ଫଳ ବାହାରିବ। ... ମା, ତାର ଗାଁ ଠାକୁରାଣୀଙ୍କ ପାଖରେ ଦୁଧ କଦଳୀ ଭୋଗ କରିଆସୁଛି।

ପ୍ରଫୁଲ୍ଲ ହାତରେ ସମ୍ବାଦ ଧରି ଦୌଡ଼ି ଦୌଡ଼ି ଆସିଲା, ବୋଉ, ମୁଁ ଫାଷ୍ଟ ହୋଇଛି।

ମଣି ଖୁସି ହୋଇ ପୁଅ ମୁଣ୍ଡରେ ଠାକୁରଙ୍କ ପାଦୁକ ବୋଳିଦେଲା। ତାର ଆଖିରୁ ଲୁହ ଗଡ଼ିପଡ଼ିଲା। ସତେ ପ୍ରଭୁ ତୋତେ ମଣିଷ କରିବେ ?

ପ୍ରଫୁଲ୍ଲ ବୃତ୍ତି ପାଇ କଲେଜରେ ଇଂରାଜୀରେ ଏମ୍.ଏ ପଢ଼ି କୃତିତ୍ୱ ସହ ପ୍ରଥମ ହେଲା।

ପ୍ରଫୁଲ୍ଲ ସମ୍ବଲପୁରରେ ଡେପୁଟି କଲେକ୍ଟର ହେଇଛି। ମା, ଭାଇ ତା ପାଖରେ ଅଛନ୍ତି ।

ସେ ବଡ଼ ଭାଇକୁ ଆଣି ପାଖରେ ରଖିଲା। କିନ୍ତୁ ତାର କିଛି ପରିବର୍ତ୍ତନ ହେଲା ନାହିଁ। ଆଜକୁ ମାସେ ହେଲା ମୁରଲୀ କୁଆଡ଼େ ଯାଇଛି ତାର ଦେଖାନାହିଁ। ମା ତାର ସବୁବେଳେ ବସି କାନ୍ଦୁଛି।

ମୁରଲୀ ଗୁଣ୍ଡା, ଡକାଏତଙ୍କ ସାଙ୍ଗରେ ମିଶି ଯା ଘରେ, ତା ଘରେ ଚୋରି କରିବାକୁ ଲାଗିଲା। ଗୁଣ୍ଡାମାନେ ମୁରଲୀଠାରୁ ସବୁ ଆଦାୟ କରନ୍ତି, ମାତ୍ର ତାକୁ ବହୁତ ହଇରାଣ କରନ୍ତି।

ସମ୍ବଲପୁରରୁ ଚାରିମାଇଲ୍ ଦୂର ମଫସଲ ଗାଁର ଜଣେ ମହାଜନ ଘରେ ପଶି ସମସ୍ତେ ବହୁତ, ସୁନା, ଟଙ୍କା ଚୋରି କଲେ। ଗୋଟିଏ ଜଙ୍ଗଲ ପାଖରେ ଭାଗ ବାଣ୍ଟ କରିବେ ବୋଲି ସମସ୍ତେ ବସିଲେ। ବଣ୍ଟାବଣ୍ଟି କରିବା ନେଇ ସେମାନଙ୍କ ଭିତରେ ପାଟି ତୁଣ୍ଡ ହେଲା। ଗୁଣ୍ଡାଯାକ ମୁରଲୀକୁ ବାଡ଼େଇ ଗୋଟାଏ ଜଙ୍ଗଲର ରାସ୍ତାକଡ଼ରେ ପକାଇ ଦେଇ ଚାଲିଗଲେ। ସେ ଅଜ୍ଞାନ ହୋଇ ପଡ଼ିଛି।

ନିର୍ଜନ ରାତି, ପ୍ରଫୁଲ୍ଲ ସେଇ ବାଟେ ଯାଉଥିଲା ଟୁର୍‌ରେ। ଚାରିଆଡ଼ ଅନ୍ଧକାର। ମୁହଁକୁ ମୁହଁ ଦେଖାଯାଉ ନାହିଁ। ବିଲୁଆର ଆର୍ତ୍ତନାଦ ଶୁଭୁଛି। କୁକୁରଗୁଡ଼ାକ ଏପାଖ ସେପାଖ ହଉଛନ୍ତି। ତାକୁ ଯେପରି ଲାଗୁଛି ସତେକି କିଏ ମାଡ଼ି ବସୁଛି। ସେ ଚାରିଆଡ଼କୁ ଚାହିଁଲା। କାହିଁ - କେହିତ, ଦେଖାଯାଉ

ନାହାଁନ୍ତି । .... କାହାର କରୁଣ ସ୍ୱର । କାର୍ ଆଲୁଅଟା ପଡ଼ିଗଲା - ମୁରଲୀ ଉପରେ । ପ୍ରଫୁଲ୍ଲ ଚାହିଁଦେଇ ଚମକି ପଡ଼ି କାର୍‌ଟିକୁ ରଖି ଓହ୍ଲାଇଲା । ସେ, ଯାହାଦେଖିଲା ଆଖିକୁ ତାର ବିଶ୍ୱାସ କରି ପାରିଲା ନାହିଁ । ଭାଇକୁ ତାର ରକ୍ତାକ୍ତ ଅବସ୍ଥାରେ କିଏ ପକାଇ ଦେଇ ଯାଇଛି ।

ସେ ଅପେକ୍ଷା ନକରି ଗାଡ଼ି ଭିତରକୁ ଟେକି ନେଇ ହସ୍ପିଟାଲ୍ ଗଲା ।

ହସ୍ପିଟାଲ୍ ବେଡ୍‌ରେ ମୁରଲୀ ଶୋଇଛି । ବ୍ଲଡ୍ ଦିଆଚାଲିଛି । ତାର ମା, ଭାଇ, ପାଖରେ ବସିଛନ୍ତି । ତାର ଟିକେ ଜ୍ଞାନ ଆସିଲା ଚାରିଆଡ଼କୁ ଚାହିଁଲା । କୋଉଠି ମୁଁ ଶୋଇଛି । ତାର ଆଖିପଡ଼ିଗଲା ମା ଓ ଭାଇଙ୍କ ଉପରେ ।

ମୁରଲୀ ମାର, ହାତକୁ ଧରି କାନ୍ଦି ପକାଇ କହିଲା - ମୋର ଭୁଲ୍ ହୋଇଛି ମୋତେ କ୍ଷମା ଦେ ? ମୁଁ ଜୀବନରେ ତତେ ବହୁତ ଦୁଃଖ ଦେଇଛି । ମୋ ପାଇଁ ତୁ, କେତେ କାନ୍ଦିଛୁ ।

ମଣି ପୁଅର ମୁଣ୍ଡକୁ ଆଉଁସି ଦେଲା - ଭଗବାନ ତୋତେ ବାଟକୁ ଫେରାଇ ଆଣିଛନ୍ତି, ସତରେ ମୁରଲୀ ମୋର ମଣିଷ ହେବ ??



# ନିୟତିର ପରିହାସ

ଗଣିଆରେ ଗଣିଆ, ଆରେ ପୋଡ଼ାମୁହାଁ କୁଆଡ଼େଗଲୁ । ଏତେବେଳ ହେଲାଣି, ବିଲକୁ ହଳ କେତେବେଳକୁ ଯିବ । ଗାଈ ଗୋରୁ ବନ୍ଧା ହୋଇଛନ୍ତି, ଗୁହାଳ ପୋଛା ହୋଇନାହିଁ, ବଳଦ ଖାଇ ନାହିଁ, ରଇଜଳା କଂସାଏ ପକାଇ ଦେଇ ଡିଆଁ ମାରିଲା । ବୋପା ଯେମିତି ରଖିଛି ଖାଇ ଦେଇ ବୁଲିବାକୁ ।

ଗାଁ ମୁଣ୍ଡରୁ ରାମପଧାନ ସାହୁକାର ପାଟି କରି ଆସୁଛି । କିହୋ, ଗଣିଆ ବୋଉ ମାଉସୀ ସକାଳୁ ପାଟି କାହା ଉପରେ ?

କଣ କରିବି ପୁଅ ମୋର ଯୋଉ ଯୋଗ୍ୟବନ୍ତ ପୁଅ ଖଣ୍ଡିକ - ଖାଲି ଖାଇବ, ବୁଲିବ । କୁଟାଖଣ୍ଡିକ ଦିଖଣ୍ଡ କରିବ ନାହିଁ । ବାପ ତ ଗଲା । ମୁଁ ମାଇପ ଲୋକ କଣ କରିବି ?

ସ୍କୁଲକୁ ଅବଧାନଙ୍କ ପାଖକୁ ପଠାଇଲି, ପାଠପଢ଼ିବ କଣ ? ଏ ପିଲାକୁ ମାର ସେ, ପିଲାକୁ ମାର - କେଉଁଠି ଆମ୍ବଗଛରେ ଚଢ଼ିଲାଣିତ, କେଉଁଠି ପିଜୁଳି ଗଛରେ ଚଢ଼ିଲାଣି ? ଅବଧାନକୁ କହିଲି ହାତଗୋଡ଼ ବାନ୍ଧି ବାଡ଼େଇ ପକେଇ ଦିଅ । ଅବଧାନ ମାରିଲେ କେତେ, ହାଣିଲେ କେତେ, ଅଜରାକୁ କଣ ଲାଜ ଅଛି ? ତା ଜାଳାରୁ ମୁଁ ମଲେ ଖଲାସ । ହଇହୋ, ସାହୁ ପୁଅ ତୁମେ ସକାଳୁ କୁଆଡ଼େ ଆସିଲ ?

ଆଉ ଆସିବି କୁଆଡ଼େ ମାଉସି, ତୁମରି ପାଖକୁ ଆସିଥିଲି । ସେଦିନଠାରୁ ଦୋକାନ ସଉଦା ନେଇ ଥିଲ କେତେପଇସା ହେଲାଣି ଦବାକୁ ନାହିଁ । ଗଣିଆ ମଉସା ବେମାର ପଡ଼ିଲେ ଦୁଇଶହ ଟଙ୍କା ଦେଲି - ସୁଧମୂଳ ହୋଇ ପାଞ୍ଚ ଶହ ପାଖାପାଖି ହୋଇଗଲାଣି । ଦଉନାହଁ । ମାଗିଲେ କହୁଛ ଧାନ ଅମଳ ହଉ, ଏଥରକ ଭଲରେ ମାଉସୀ କହୁଛି, ଦେଇଦିଅ ନ ହେଲେ ମୋ ଦେଖିଲା କାମ କରିବି । ଆଉ ମୋତେ ଦୋଷ ଦେବ ନାହିଁ ।

ଗଣିଆ ବୋଉ ପାଟିକରି ଉଠିଲା କଣ କହିଲୁ ? ଦେଖିଲା କାମ କରିବୁ । ହେଇ ହେଇ ମାଲିମକଦମା କରିବ । ବୁଢ଼ୀଟାକୁ କଚେରୀ ଦେଖାଇବ ।

ଦେଖାଅ ମୁଁ କଣ କରିବି ସାହୁପୁଅ, କୁହ ? ସବୁବର୍ଷ ନଈବଢ଼ି ଆସିଲା । ଧାନ ବେଣ୍ଟି ଧରିଲା ବେଳକୁ ତଡ଼ିନେଲା । ତା ଦେହକୁ ପ୍ରଭୁ ଯେଉଁ ଯୋଗ୍ୟବନ୍ତପୁଅ ଦେଇଛନ୍ତି । ବାପ ତ ମଲା, ସବୁ ମୋ ଭାଗ୍ୟରେ ଅଛି ସହିବାକୁ ଶୁଣିବାକୁ । ଗଣିଆ ଯଦି ମଣିଷ ହୁଅନ୍ତା ମୁଁ କାହିଁକି ଏ ଅନୁଭବ କରନ୍ତି ।

ହଉ ମୁଁ ଯାଉଛି, କହିବା କଥା କହିଦେଲି, ନକରି କଣ ମାଲିବକଦମା କରିବି ? ଗାଁରେ ଘର ସମସ୍ତେ କରିଛେ, ସମସ୍ତଙ୍କ ସୁବିଧା ଅସୁବିଧା ଦେଖିବା କଥା । ନେଲ ଯେମିତି ଦେଇଦେଲେ ସିନା ଭଲ । ରାମସାହୁ ଏତକ କହିଦେଇ ଘରକୁ ଗଲା ।

ରାମସାହୁର ସ୍ତ୍ରୀ ସାକ୍ଷାତ ଚଣ୍ଡୀ । ସେ, ଘରେ ଗୋଡ଼ ନ ଦଉଣୁ ତାର ସ୍ତ୍ରୀ ପାଟି କରି ଉଠିଲା, କୁଆଡ଼େ ଯାଇଥିଲି ଏତେବେଳେ ଯାକେ ?

ସକାଳପହରୁ ଗଲାଣି ଯେ ବେଳ ଦୁଇଘଡ଼ି ହେଲାଣି । କି ନିଆଁ ପାଉଁଶ ଦୋକାନ ହୋଇଛି । ଧାରଉଧାର କାହାକୁ ଦିଆ ହୋଇଥବ ଏଣେ ମଗା ଚାଲିଥିବ । କିହୋ, ଧାର ଉଧାର ଦବ କାହିଁକି, ମାଗିବ କାହିଁକି ? ଆମେ ବିପଦରେ ପଡ଼ିଲେ ଆମକୁ କିଏ ଦବ, କହୁନା ବସିପଡ଼ିଲ କଣ କୁହ ? ଆଉ ପାଟି ଫିଟିବନାହିଁ ।

- କିଲୋ, ମୁଁ ଯାହା କଲି ତୁ କଣ ମୋତେ ସବୁବେଳେ ଶାସନ କରିବୁ ? ଆଉ ଦିନେ ଯଦି ମୋ ସାଙ୍ଗରେ ବକର ବକର ହବୁ, ସେହିଦିନ ମତେ ଚିହ୍ନିବୁ ରାମସାହୁ କିଏ । ହଇଲୋ, ଗାଁ କଥା ସୁବିଧା ଅସୁବିଧା ସମସ୍ତଙ୍କର ଅଛି । ଗଣିଆ ବାପ ବେମାର ପଡ଼ିଥିଲା ତା ମାଇପ ଦୁଇ ଶହ ଟଙ୍କା ନେଇଥିଲା । ସୁଧ ମୂଳ ମିଶାଇ ଗୁଡ଼ାଏ ହେଲାଣି । ତା ପାଖକୁ ଯାଇ ନ ଡରେଇଲେ ସେ ଦବ କିଛି ବୁଝିବୁ ନାହିଁ, ଖାଲି ମୋ ଉପରେ ତମ ତମ । ଯାହାହେଉ ବାପ ଭଲ କନ୍ୟାଟିଏ ବାହା କରି ଦେଇଛି, ଅଖା ଧୋଉଥିବି, ଗୁଣ ଗାଉଥିବି । ମୋତେ ସତେକି ପୋଷି ପକାଇବ । ପୁଅଟାଏ ଏଡ଼େଟାଏ ହେଲାଣି ଦୋକାନ କଥା ଟିକେ ବୁଝିବ ନାହିଁ । ହଉ, ଦୋକାନ କଥା ନବୁଝୁ, ପାଠ ଦିଅକ୍ଷର ପଢ଼ ? କିଛି ନାହିଁ । କପାଳକୁ ମାଇପ ଯେମିତି, ପୁଅ ସେମିତି । ମୁଁ ମଲେ ପେଜ ମୁନ୍ଦେ ଯାଙ୍କ ମୁହଁରେ କେହି ଦବ ନାହିଁ । ସେତେବେଳକୁ ରାମସାହୁକୁ ମନେ ପକାଇବେ ।

ଏତକ କହି ରାମ ସାହୁ, ଗଣ୍ଡେ ଖାଇଦେଇ ଦୋକାନକୁ ଗଲା ।

ଗଣିଆ ବୋଉର ସବୁବେଳେ ଗଣିଆ ପାଇଁ ବ୍ୟସ୍ତ । ଦୁଃଖିଲୋକ - ଦୁଃଖ କଲେ ସଂସାର ଚଳିବ । ଆଜି ସିନା ପିଲା ହୋଇଛି, ଗଣ୍ଡେ ଖାଇ ଡିଆଁ ମାରୁଛି । ସବୁଦିନେ ତ ପିଲା ହୋଇନଥିବ, କାଲି ସକାଳେ ବଡ଼ ହେବ । ବାହା ସାହା ହୋଇ ସଂସାର କରିବ । ମୁଁ ହେଲି ପାକଲା ତାଳ । ଆଜି ଅଛି, କାଲି ସେ ପାରିକି ଯିବି । ମଣିଷ ପରି ମଣିଷ ହୁଅନ୍ତା । ଜମିବାଡ଼ି ଟିକେ ଦେଖନ୍ତା । ସାହୁକାର କରଜ ଗଣ୍ଡାକ ଦେଇଦେଲେ ମୁକ୍ତ ହୁଅନ୍ତି । ବଞ୍ଚି ଥାଉ ଥାଉ ହାତକୁ ଦିହାତ କରନ୍ତି । ହେ ପ୍ରଭୂ ମୋ ଗଣିଆକୁ ବୁଦ୍ଧି ଦିଅ । ଏତକ କହି ସେ, ଗାଧୋଇ ଗଲା । ଗାଧୋଇ ଆସି ଲୁଗାଟାକୁ ପିଢ଼ା ଉପରେ ପକାଇ ଦେଲା ।

କବାଟ ଠକ୍ ଠକ୍ ଶୁଭିଲା - ଗଣିଆ ବୋଉ ମାଉସି ଅଛକି ?

ମଲା, ଏତେବେଳକରେ କିଏ ଡାକୁଛି । ଗାଧୋଇ ମଣିଷର ପେଟକୁ ଦାନା ଯିବାକୁ ନାହିଁ । ଏଣେ କିଏ ଡାକ ଦେଲାଣି । ସେ ତରତର ହୋଇ କବାଟଟାକୁ ଫିଟାଇ ଦେଇଛି ଦୃଷ୍ଟି ପଡ଼ିଗଲା ହାରା ବୋଉ ଉପରେ । କିଲୋ, ତୁ ଏତେବେଳେ କୁଆଡ଼େ ? ହଁ ଏମିତି ବୁଲି ଆସିଥିଲି । ନାନୀ, ଗୋଟିଏ କଥା କହିବି, ରାଗିବ ନାହିଁ । ଗଣି ଏଡ଼େଟାଏ ହେଲାଣି କଣ ତା ପାଇଁ କନ୍ୟା କୋଉଠି ଦେଖିଲଣି ନା ନାହିଁ ।

ଗଣିଆ ବୋଉ ମୁହଁଟାକୁ ମୋଡ଼ି ଦେଇ ଅଗଣା ମଝିରେ ବସିପଡ଼ିଲା । ହଇଲୋ, ହାରାବୋଉ ଶୁଣ ? ଗଣିଆକୁ କହୁଛ ବାହା କରୁନାହିଁ । ବାହା କରିଦେବି । ସେ ଝିଅକୁ ପୋଷିବ କିଏ ? ମୁଁ ତ ନିଜ ପେଟ ପାଇଁ ବାରଦୁଆର ହଉଛି । ଯେଉଁଦିନ ପ୍ରଭୂ ଗଣିକି ମୋର ମଣିଷ କରିବେ, ସେହି ଦିନ ସେ ହାତକୁ ଦିହାତ ହବ ।

ଗଣିଆ ବୋଉ, ହାରା ବୋଉ ଦୁଇଜଣ ଅଗଣା ମଝିରେ ବସି ପଡ଼ିଲେ । ସେ କାନ୍ଦିପକାଇ ହାରା ବୋଉ ଆଗରେ କହିଲା କାଲି ପରି ଆଜି ତାଙ୍କ କଥା ମନେପଡୁଛି । ଦଶବର୍ଷ ହେଲା ଗଲେଣି । ଗଣିଟି ନଅ ଦଶବର୍ଷର ହୋଇଥିଲା । ସେ ମଲାବେଳକୁ କହିଯାଇଥିଲେ, ମୋ ଲାଗି କାହିଁକି ବିକଳ

ହଉଛୁ, ଗଣିକି ଚାହିଁବୁ ଗଣି ତୋର ଦୁଃଖ ନବ। ସତେ ଗଣି ମଣିଷ ହେବ, କୂଳର ନାଁ ରଖିବ। ହେ ପ୍ରଭୂ ତୁମେ ଭରସା। ଗଣିଆ ବୋଉ ଆଖିରୁ ଲୁହ ଗଡ଼ିପଡ଼ିଲା। ଏତକ କହି।

ହାରା ବୋଉ ଗଣିଆ ବୋଉର ଲୁହକୁ ପୋଛିଦେଇ କହିଲା ହେ ନାନୀ କାହିଁ କାନ୍ଦୁଛ, ସବୁଦିନେ କଣ ପ୍ରଭୂ ଦୁଃଖ ଦଉଥିବେ କାନ୍ଦ ନାହିଁ, ଉଠ, ଚାଲ କେତେବେଳ ଆସି ହେଲାଣି ? ରାନ୍ଧିବ କେତେବେଳେ, ଖାଇବ କେତେବେଳେ - ଯାଅ ? ମୁଁ ଯାଉଛି ଘରକୁ। ହାରା ବୋଉ ଉଠି ଚାଲିଗଲା।

ଗଣିଆ ବୋଉ ଯାଇ ରନ୍ଧାବଢ଼ା କାମ ସାରି ସଉପ ଖଣ୍ଡେ ପକାଇ ଶୋଇଲା। ସେ ଶୋଇଛି ତକିଆ ଉପରେ ଲୁହନିଗିଡ଼ି ତକିଆ ଓଦା। ଗଣିଆ ବୁଲି ବୁଲି ଆସି ପହଞ୍ଚିଲା ଖାଇବାକୁ। ଦେଖିଲା ବୋଉ ତାର କାନ୍ଦି କାନ୍ଦି, ଶୋଇପଡ଼ିଛି, ତକିଆ ଯାକ ଓଦା। ସେ, ଲଥକିନା ମୁଣ୍ଡରେ ହାତ ଦେଇ ପିଣ୍ଡା ଉପରେ ବସିପଡ଼ିଲା। ଦୁଃଖରେ ଉଠି ସେ ମନେ ମନେ ଭାବିଲା ମୋର ଲାଗି ଆଜି ବୋଉର ଏ ଅବସ୍ଥା। ଏଥରକ ବିଦେଶରେ ଯାଇ କୋଉଠି ଚାକିରୀ କରିବି। ନହେଲେ ଆମ ଗାଁରୁ ସବୁ ଯିବେ ମିଲଟେରିରେ, ସେଥିରେ ଯିବି। ବହୁତ ପଇସା ପାଇବି। ବୋଉକୁ ଟଙ୍କା ପଠାଇବି। ବୋଉ ମୋର ଖୁସି ହେବ। ସାହୁକାରର କରଜ ଶୁଝିବ। ତାର ମନ ଆନନ୍ଦରେ ଉଛୁଳି ଉଠି ସେ କହି ପକାଇଲା ହେ, ବୋଉ, ଉଠ ମୋତେ ଖାଇବାକୁ ଦେ ?

ପୁଅର ଡାକରେ ଗଣିଆ ବୋଉର ନିଦ ଭାଙ୍ଗିଗଲା ସେ ତରତର ହୋଇ ଭାତଆଣି ପୁଅ ପାଖରେ ଥୋଇ ଦେଇ ପାଖରେ ବସିଲା ମୁହଁ ଶୁଖେଇ।

କିଲୋ ? ଆଜି କଣ ହୋଇଛି ତୋର ?

- ହବ କଣ ? ତୋରି ଚିନ୍ତାରେ ମୁଁ ବେଶୀଦିନ ବଞ୍ଚିବି ନାହିଁ। ଠାକୁରେ ମୋତେ ଶୀଘ୍ର ନେଇଯିବେ କି ?

- ହେ ବୋଉ ସେ ବାଜେ କଥା ଗୁଡ଼ା ମୋତେ କହନା। ମୁଁ ଗୋଟିଏ କଥା କହିବି ରାଗିବୁ ନାହିଁ ତ ?

- ଏମିତି କି କଥା ?

- ଆଲୋ ? ଗଁଟା ଲୋକଯାଉଛନ୍ତି ମିଲଟେରିରେ । ମୁଁ ଯିବି, ସେଠି ବହୁତ ପଇସା ମିଳିବ । ଏଠି ଏମିତି କେତେଦିନ ବସିଥିବି ।

ଭରତ ଆସି ଡାକ ପକାଇଲା ଗଣିଆ ଭାଇ ଅଛୁକି ?

- ହଁ ଅଛି, ଘର ଭିତରକୁ ଆସ ?

ଭରତ ଘର ଭିତରକୁ ଆସି କହିଲା ମାଉସୀ, ଆମେ ସବୁ ମିଲିଟେରିରେ ଯାଉଛୁ ? ଗଣିଆ କହୁଛି ଆମ ସାଙ୍ଗରେ ଯିବ ତୁମେ କଣ କହୁଛ ?

- କଣ ଆଉ କହିବି ପୁଅ । ତୁମେ ସବୁତ ଯାଉଛୁ । ତାକୁ ପାଖେ ପାଖେ ରଖିଥିବ । ସତେ ଗଣି ମଣିଷ ହେବ ବାପର ନାଁ ରଖିବ ।

-ହଉ ମାଉସୀ ମୁଁ ଯାଉଛି ତୁମେ ବ୍ୟସ୍ତ ହେବ ନାହିଁ ଆମେ ଯେତେବେଳେ ଯାଉଛୁ ତାର କିଛି ଅସୁବିଧା ହବ ନାହିଁ ।

ଆରେ ପୁଅ, ମିଲଟେରି କଣ ? ଆଲୋ ବୋଉ ଆମ ଦେଶ ପାଇଁ ଯୁଦ୍ଧ କରିବା ଶିଖିବି ବୁଝିଲୁ ? ହଉ ବାପ କଣ କରୁଛୁ କର । ମୁଁ ଆଉ କଣ କହିବି ? ସେ ଭାବିଲା ଆଉ ଚାରିଦିନ ରହିଲା, ସବୁ ଯିବେ । ଗଣିବି ତାଙ୍କ ସାଙ୍ଗରେ ଯିବ ।

ଗଣିଆ ବୋଉକୁ ତର ନାହିଁ ପୁଅ ତାର ଯିବ ବିଦେଶକୁ । କୋଉଠି ଚୂଡ଼ା ଚୁନା କୋଉଠି ଚାଉଳ ଭାଜି ଚୂନା କର, ସବୁ ଠିକ୍ ଠିକ୍ କରି ରଖିଲା ।

ରାତି ପାହିଲେ ପୁଅ ତାର ଯିବ ବିଦେଶକୁ । ତାର ଗଣିକି ସତେ ପ୍ରଭୁ ମଣିଷ କରିବେ ?

ରାତି ପାହି ସକାଳ ହେଲା ଗଣି ବାହାରିଲା ବିଦେଶକୁ ।

ଗଣିଆ ବୋଉ ଦୁଃଖ କଷ୍ଟ କରି ପଚାଶଟି ଟଙ୍କା ରଖିଥିଲା ଲୁଚାଇ ଗୋଟିଏ ଘଡ଼ି ଭିତରେ। ତା ଭିତରେ ଦଶଟି ଟଙ୍କା ରଖି, ଚାଳିଶି ଟଙ୍କା ପୁଅକୁ ଦେଲା। ଗାଁ ଲୋକଙ୍କ ସାଙ୍ଗରେ ଗଣିଆ ଗଲା। ଗଣିଆ ବୋଉ କାନ୍ଦି କାନ୍ଦି ଅଧବାଟ ପର୍ଯ୍ୟନ୍ତ ବଳେଇ ଦେଇ ଆସିଲା।

ଗଣିଆ ମିଲିଟେରି ଚାକିରୀରେ କୃତିତ୍ୱ ହାସଲ କରିଛି।

ଗଣିଆ ବୋଉ ନିତି ଡାକଘରକୁ ଯାଏ ପୁଅ ତାର ଚିଠି ଦେଇଥିବ। ଚିଠି ନ ପାଇ ନିରାଶ ହୋଇ ଆସେ। କେତେଦିନ ହେଲାଣି ପୁଅ ତାର ଗଲାଣି କୋଉଠି ଅଛି ଚିଠିଖଣ୍ଡେ ଦଉ ନାହିଁ। ତାର ପେଟ ଭିତର ଘାଣ୍ଟି ଚକଟି ହୋଇପଡ଼ିଲା, ଆଉ ରାନ୍ଧେ ନାହିଁକି ଖାଏ ନାହିଁ। ନିଜକୁ ଧିକ୍କାର କରେ, ଆଜି ତାରି ପାଇଁ ପୁଅ ତାର ଘରୁ ଗୋଡ଼ କାଢ଼ିଲା। ହେ, ପ୍ରଭୂ ତୁମେ ମୋ ଗଣିକି ମଣିଷ କର।

ଗଣିଆ ବୋଉକୁ ଆଜି ଭାରି ଜର। ଘରୁ ଉଠୁ ନାହିଁ। ହାରା ବୋଉ ତା ପାଖରେ ବସିଛି।

ଦାଣ୍ଡରେ ପୋଷ୍ଟ ପିଅନ ଡାକ ଦେଲା ହେ ମାଉସୀ, ତୁମର ଚିଠି ଟଙ୍କା ଆସିଛି ନେଇଯାଅ।

ଗଣିଆ ବୋଉ ତର ତର କରି ବିଛଣାରୁ ଉଠି ଦାଣ୍ଡକୁ ଗଲା।

ପୋଷ୍ଟପିଅନ ଚିଠି ଏବଂ ପଚାଶ ଟଙ୍କା ଦେଲା।

ଗଣିଆ ବୋଉ ଟଙ୍କା ରଖି ଚିଠିଟିକୁ ହାରା ବୋଉକୁ ଦେଲା ପଢ଼ିବାକୁ।

ହାରା ବୋଉ ତା ପୁଅକୁ ଡାକି ଚିଠିଟିକୁ ପଢ଼ାଇଲା। ବୋଉ ଜାଣିବୁ, ଟଙ୍କା ପଠାଇଲି, ସାହୁକାରକୁ କିଛି ଦବୁ। ତୋ ଦେହ କିପରି ଅଛି। ମୁଁ ଭଲ ଅଛି। ଆର ମାସକୁ ମୁଁ ଆସାମ ଯାଉଛି।

ଆଜି ତାର ମନ ଆନନ୍ଦ। ପୁଅ ତାର ମଣିଷ ହୋଇଛି। ଟଙ୍କା ପଠାଇଛି। ଆସିଲେ ବାହା କରିବ। ଘରକୁ ବୋହୂ ଆସିବ।

ଖବର କାଗଜରେ ବାହାରିଛି ଆସାମରେ ଭୟଙ୍କର ଯୁଦ୍ଧ ଚାଲିଛି । ଗଣିଆ ବୋଉ ଯୁଦ୍ଧ କଥା ଶୁଣି ଡାକଘରକୁ ଯାଉଛି ତା ପୁଅର ଖବର ଟିକକ ପାଇଁ ଗାଁ ଯାକ ଚହଳ ପଡ଼ିଛି । ଘରେ ଘରେ ରନ୍ଧାବଢ଼ା ବନ୍ଦ । ରେଡ଼ିଓରୁ ଖବର୍ ଜାଣିବା ପାଇଁ ଲୋକ ଭିଡ଼ ।

ବୁଢ଼ି ଲୋକ ଭିଡ଼ରେ ମୁହଁଟି ଶୁଖାଇ ଠିଆ ହୋଇଥାଏ । ମନେ ମନେ କେତେ ଦିଅଁ ଦେବତାଙ୍କୁ ଡାକେ ମୋ ଗଣିକି ଭରସା ହୁଅ ।

ହଠାତ୍ ପୋଷ୍ଟ ପିଅନ୍ ଟେଲିଗ୍ରାମ୍ ନେଇ ପହଞ୍ଚିଲା । ଗାଁ ଲୋକ ତର ତର ହୋଇ ଟେଲିଗ୍ରାମ ଖୋଲି ଦେଖିଲେ । ଗଣିଆ ଆଉ ନାହିଁ । ଦେଶ ପାଇଁ ଜୀବନ ଦେଇଛି ।

ଗଣିଆ ବୋଉ ପୁଅ କଥା ଯେମିତି ଶୁଣି ଦେଇଛି ଅଜ୍ଞାନ ହୋଇ ପଡ଼ିଗଲା । ଯେତେ ଯାହା କଲେ ଜ୍ଞାନ ତାର ଆଉ ଫେରିଲା ନାହିଁ ।



# ସଉରିନାନୀ

ହରିପୁର ଗାଁ ଦାଣ୍ଡ ଗାଈ ସବୁ ଚରି ଘରମୁହାଁ ହେଲେଣି । ଲୋକନାଥ ଦାଣ୍ଡ ପିଣ୍ଡାରେ ବସିଛନ୍ତି । ହାରାମଣି ଅଗଣାରେ ବିରି ଚାଉଳ ବାଟୁଛନ୍ତି । ଶାଶୁ - ଦାଣ୍ଡ ଘରେ ବସି ଗୁଣୁରୁ, ଗୁଣୁରୁ ହଉଛନ୍ତି ।

ଲୋକନାଥଙ୍କୁ ଶୁଭିଗଲା ମାଙ୍କ କଥା । ସେ ପାଟିକଲେ, ହେ ବୋଉ, କାହିଁକି ସବୁବେଳେ ହଉଛୁ ଏମିତି, ଆମର ତ ଭାଗ୍ୟରେ ନାହିଁ ତୁ, ଏମିତି ହେଲେ ପ୍ରଭୁ କଣ ଦେଇଦେବେ ?

ଲୋକନାଥଙ୍କର ଯାହା ସମ୍ପତ୍ତି ଅଛି ଦୁଃଖେ କଷ୍ଟେ ଚଳନ୍ତି । ଗୋଟାଏ ଅଭାବ ପ୍ରଭୁ ଦେଇଛନ୍ତି ସନ୍ତାନ ନାହିଁ । ହାରାମଣି କଣ ବା ନ କରିଛନ୍ତି । ଦିଅଁ ଦେବତା ଓପାସ ସବୁକିଛି କରିଛନ୍ତି । ଆଉ ବା କଣ କରନ୍ତେ, ପ୍ରଭୁଙ୍କର ଯଦି ଦୟାହେବ ଗଛ ଫଳିବ ନ ହେଲେ ନାହିଁ । ଯାହାର ପୁଅ ଝିଅ ନାହିଁ ସେ କଣ, ରହୁନାହିଁ ।

ହାରାମଣିଙ୍କର ସର୍ବଦା ମନଦୁଃଖ - ହେ ପ୍ରଭୁ । ମୋତେ ପୁଅ ନଦିଅ ବକଟେ ମାଇକିନା ଝୁଅ ଦିଅ ? ଶାଶୁ ସବୁବେଳେ ଚିଡୁଛନ୍ତି । ପୁଅକୁ ତାଙ୍କର ଆଉ ଗୋଟିଏ ବିବାହ କରିବେ । କେତେଥର ଦେଖାଇଲା ପରି ପୁଅ ଆଗରେ କହିଛନ୍ତି । ସେ, କାନରେ ପକାନ୍ତି ନାହିଁ ।

ହାରାମଣି ଯେପରି ସୁନ୍ଦରୀ ସେହିପରି ବୁଦ୍ଧିମତୀ ।

ଲୋକନାଥ ସ୍ତ୍ରୀକୁ ଜୀବନଠାରୁ ବଳି ଭଲ ପାଆନ୍ତି । ଆଜି ସେ ଥାଉ ଥାଉ, ଆଉ ଗୋଟେ ବିବାହ କରିବେ? ନାଁ ତାହା ହୋଇପାରିବ ନାହିଁ ।

ଦିନକୁ ଦିନ ଶାଶୁଙ୍କର ଗାଳି ସହି ହେଉନାହିଁ ।

ଭୁବନେଶ୍ୱର ମନ୍ଦିରରେ ଆଜି ଜାଗର ଯାତ୍ରା । ଗାଁରୁ ଯାଉଛନ୍ତି କେତେକ ଲୋକ । ଗାଁର ସଉରିନାନୀ ଡାକି ଡାକି ଆସିଲା । ଲୋକାବୋଉ

ନାନୀ ଅଛ କି  ହେ ? ବୁଢ଼ୀ ଶୋଇଥିଲେ ପାଟିବାରି ଉଠିଲେ, କଣ କିଲୋ, ସଉରି ?... ନାନୀ ମୁଁ, କଣ କହୁଥିଲି କି, କାଲି ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିରରେ କାଗର ଯାତ୍ରା। ବୋହୁକୁ ନେଇ ଚାଲ ସେଠି ପୂଜା କରି ଆସିବା। ଆର ବର୍ଷକୁ ପୁଅ କି ଝିଅ ଯଦି ହବ, ତୁମ ପାଖକୁ ସବୁବର୍ଷ ଆସିବି ?

ବୁଢ଼ୀ ମୁହଁଟାକୁ ମୋଡ଼ିଦେଲା। ହେ ସଉରି, ଆଲୋ ବସ ମୋ ପାଖରେ ? ଲୋକାକୁ କେତେ କହିଲି ଆଉ ଗୋଟିଏ ବିବାହ ହୋ। ସେ ଶୁଣୁ ନାହିଁ। ନଶୁଣୁ ଏ ବଂଶ କେମିତି ରହିବ କହିଲୁ ? ଆଲୋ ସଉରି ତୁ ଖାଲି କହୁଛୁ ଠାକୁରଙ୍କ ପାଖକୁ ଚାଲେ। ମୁଁ କଣ ତା ପାଇଁ ପୂଜାଉଜା କରିନାହିଁ। ତୁ ଯଦି ଡାକୁଛୁ ଯା, ଲୋକାକୁ କହିବୁ, ମୁଁ ଘରେ ଅଛି ସେ, ବୋହୁକୁ ନେଇ ଯାଉ, କାଳେ ଦିଅଁଙ୍କର ଦୟା ହେବ କିଏ ଜାଣେ।

ଦିନ ଦ୍ୱିପହର, ଲୋକନାଥ ବିଲରୁ ଆସି ଗାଧୋଇ ଖାଇ ବସିଛନ୍ତି। ସଉରିନାନୀ ଆସି ପାଖରେ ବସିଲା।

- କିଲୋ, ନାନୀ କୁଆଡ଼େ ?

- ନାହିଁ ଆସିଥିଲି ତୋ ମା ପାଖକୁ ଗୋଟେ କଥା କହିବାକୁ।

- କି କଥା।...

କାଲି ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିରରେ କାଗର ଯାତ୍ରା। ଆମେ ସବୁ ଯାଉଛୁ, ତୋ ମା଼କୁ କହିବାକୁ ଆସିଥିଲି ବୋହୁକୁ ନେଇ ଯିବା ପାଇଁ, ବୁମ୍ମୀ କହିଲା। ସେ ଘରେ ରହିବ ତୁ ନେଇକରି ଯିବୁ, କଣ କହୁଛୁ ?

ହଉ ନାନୀ ତୁ ଯଦି କହୁଛୁ ଯିବା, ଯାହା ଠାକୁରଙ୍କର ବରାଦ ଥିବ।

ହାରାମଣି ରାତିରେ ଭୋଗ, ଘିଅ ଦୀପ ସବୁ ସକାଢ଼ି ଶୋଇବାକୁ ଗଲେ। ଲୋକନାଥ ଖଟ ଉପରେ ଶୋଇଲେ। ସେ ସଉପ ଖଣ୍ଡେ ପକାଇ ଶୋଇପାରିଲା ନାହିଁ। ଲିଙ୍ଗରାଜଙ୍କ ନାଁରେ ମୁଣ୍ଡିଆଟିଏ ମାରିଲା। ହେ ପ୍ରଭୁ

ମୋତେ ନଉଛ ନିରାଶ କରିବ ନାହିଁ, ମୁଁ ବଞ୍ଚିଥିବା ପର୍ଯ୍ୟନ୍ତ ତୁମର ଓପାସ କରିବି ।

ରାତି ପାହି ସକାଳ ହେଲା । ସ୍ୱାମୀ ସ୍ତ୍ରୀ ଦୁଇଜଣ ଗାଁ ଲୋକଙ୍କ ସାଙ୍ଗରେ ଭୁବନେଶ୍ୱର ଗଲେ । ଗୁଡ଼ାଏ ବାଟ, ପହଞ୍ଚିଲା ବେଳକୁ ଦିନ ଦୁଇଘଡ଼ି । ସମସ୍ତେ ମନ୍ଦିର ଭିତରକୁ ଗଲେ । ପୂଜାପୂଜି ସରିଲା । ଲୋକନାଥ, ହାରାମଣି ଠାକୁରଙ୍କ ପାଖରେ ଗୁହାରି ଶୁଣାଇ ଫେରିଲେ ।

ସମସ୍ତେ ଗାଁରେ ପହଞ୍ଚିଲା ବେଳକୁ ରାତି ଦୁଇଘଡ଼ି । ବୁଢ଼ୀ ରାନ୍ଧି ବାଢ଼ି ବସିଛି ।

ବୁଢ଼ୀ ଗାଁରେ, ପଡ଼ିଶା, ଅଡ଼ିଶା, ବନ୍ଧୁବାନ୍ଧବ ଯାହାକୁ ଦେଖ କହେ । ଲୋକା ଆଉ ଗୋଟେ ବାହା ହଉନାହିଁ, ଏ ବଂଶ ରହିବ କେମିତି ? ସବୁବେଳେ ଶୁଣି ଶୁଣି ହାରାମଣିଙ୍କ ଦେହ ପଥର ହେଲାଣି । ପୁଅ ତାଙ୍କର ବାହା ହଉ ନାହାନ୍ତି ମୁଁ କଣ ମନା କରୁଛି ?

ମୁଁ ଖଟୁଛି, ଗଣ୍ଡେ ଖାଉଛି । ନା, ଏଘରୁ ମୁଁ ଯାଇପାରିବି ନାହିଁ । ଏ ଘର ମୋର, ଏ ସଂସାର ମୋର । ବାପ କଣ ମୋତେ ଦେଇଥିଲା ଯିବାକୁ ହେ, ପ୍ରଭୁ ମୋତେ ଏଯ୍ୟା ଶୁଣାଇଲ । ଯଦି ତୁମର ଦୟା ହେବ ଏଇ ଘର ହସି ଉଠିବ ।

ଲୋକନାଥ ଯେପରି ଦୟାଳୁ ହାରାମଣି ମଧ୍ୟ ସେହିପରି । ଦୁଃଖୀ, ରଙ୍କିଙ୍କ ପେଟ ଚିହ୍ନନ୍ତି । ତାଙ୍କ ଦୁଆରୁ କିଏ କେବେ ଫେରିଯାଏ ନାହିଁ ।

ବୁଢ଼ୀର କିନ୍ତୁ ଗୋଟିଏ କଥା - ଆରେ ଲୋକା ବାହା ହୋ, ଏ ବଂଶ ରହିବ କେମିତି । ଲୋକନାଥ କିଛି ଶୁଣନ୍ତି ନାହିଁ । ସେ ଯଦି ମାଙ୍କ କଥା ଶୁଣିବେ, ହାରାମଣିର ହବ କିଏ । ତାପରି ସ୍ତ୍ରୀ କଣ ମୁଁ ଜୀବନରେ ପାଇବି ।

ସେ, ଭାବନ୍ତି ମା ମୋର ବୁଢ଼ୀ ହେଲାଣି, ତାର ଇଚ୍ଛା ନାତି ନାତୁଣୀ ଖେଳାନ୍ତା । ମୁଁ ଛୋଟ ହୋଇଥିଲି ମା ମୋର କହେ ତୋରି ପାଇଁ ଜୀବନ

ରଖିଲି । ବାପା ମଲେ - ଦଉଡ଼ିଲି ନଈରେ ବୁଡ଼ି ମରିବାକୁ - ଗାଁ ଲୋକ ନଈରୁ ଘୋଷାରି କରି ଆଣି କହିଲେ, ହଇହେ, ଲୋକା ବୋଉ ଲୋକାବାପା ପରା ଲୋକାକୁ ଦେଇଛନ୍ତି, ତାକୁ ମଣିଷ କରି ବଂଶ ରଖ, ପାଣିରେ ବୁଡ଼ିମଲେ ଲୋକା ଭାସିଯିବ, ତାର କିଏ ଅଛି ତାକୁ ଦେଖିବ । ମୁଁ ତୋତେ କୋଳକୁ ନେଇ କାନ୍ଦି ପକାଇଲି ? ପୁରୀ ଲୋକନାଥଙ୍କୁ ଡାକିଲି, ହେ ପ୍ରଭୁ ଲୋକନାଥ, ମୋ ପୁଅକୁ ମଣିଷ କରି ବଂଶ ରଖ ।

ଆଜି ଲୋକାବୋଉ ବୁଢ଼ୀ ହେଲାଣି । ସ୍ୱାମୀ ମଲା କଥା ତାର ମନେପଡୁଛି । ଲୋକନାଥ ମହାପ୍ରଭୁଙ୍କ ଦୟାରୁ ଲୋକାକୁ ମଣିଷ କଲି, ହାତକୁ ଦି ହାତ କରି, ବାର ବର୍ଷ ହୋଇଗଲା ଗଛ ଫଳିଲା ନାହିଁ । କେମିତି ବଂଶ ରହିବ, ସତେ ଲିଙ୍ଗରାଜ ମହାପ୍ରଭୁ ଗୁହାରି ଶୁଣିବେ ।

ବୁଢ଼ୀ ରାତିରେ ଭାବି ଭାବି, କାନ୍ଦି କାନ୍ଦି ଶୋଇପଡ଼େ ।

ବୁଢ଼ୀକୁ ଚାରିଦିନ ହେଲା ବହୁତ ଜର । ଉଠିପାରୁନାହିଁ ।

ଲୋକନାଥ ସବୁବେଳେ ମା ପାଖରେ । ହାରାମଣି ଉପରେ ଘର ଗୋଟାକ କାମ, ଶାଶୁ ପଡ଼ିଛନ୍ତି ରୋଗଶଯ୍ୟାରେ । କାମ ସବୁ, ସେ ଖୁସିରେ କରିଯାଏ । ଶାଶୁଙ୍କୁ ଦେଖିଲେ ତାର ମନ ଭାଙ୍ଗିପଡ଼ୁଛି, ସେ ସିନା ମୋ ଉପରେ ରାଗନ୍ତି ପୁଅ ପାଇଁ କଣ ନ କରିଥିଲେ । ବୁଢ଼ୀ ଲୋକ ଆଶାକରିଥିଲେ, ନାତିକି ନାତୁଣୀ ହବ ଦେଖିବେ । ଭଗବାନଙ୍କର ଅଲଗା ବିଚାର ।

ହାରାମଣି ଏତକ କହି ଶାଶୁଙ୍କ ପାଖରେ ବସି କାନ୍ଦି ପକାନ୍ତି । ହେ, ପ୍ରଭୁ ମୋ ଶାଶୁଙ୍କୁ ବଞ୍ଚାଅ, ତାଙ୍କ ଆଶା ପୂରଣ କର ।

ଜାଗର ଅମାବାସ୍ୟା, ଚାରି ପାଞ୍ଚଦିନ ଅଛି ବୁଢ଼ୀଙ୍କ ଦେହ ବେଶୀ ଖରାପ । ସେ, ପୁଅକୁ ଅଣ୍ଡାଳି ଖନେଇ ଖନେଇ କହୁଛନ୍ତି, ବାପା ମୋ କଥା ଶୁଣିଲୁ ନାହିଁ, ଏ ବଂଶ ରହିବ କିପରି । ମୁଁ ତ ଚାଲିଲି । ଏତକ ବୁଢ଼ୀ କହିଦେଇ ଆଉ ତାର ଜ୍ଞାନ ନାହିଁ ।

ଦୁଇଦିନ ପରେ ବୁଢ଼ୀ ଚାଲିଗଲା । ଲୋକନାଥ ମାର ଶୁଦ୍ଧିକ୍ରିୟା କର୍ମାଦି ଭଲରେ ସମ୍ପୂର୍ଣ୍ଣ କଲେ । ତାଙ୍କର ମା କଥା ମନେ ପଡ଼ିଯାଉଛି, ମା,

କେତେ ଆଶା କରିଥିଲା । ଏହି ଜାଗରରେ ଲିଙ୍ଗରାଜ ମହାପ୍ରଭୁଙ୍କ ପାଖକୁ ପଠାଇଥିଲା । ପ୍ରଭୁ କଣ ପଥର ହୋଇଗଲେ, ତା ଡାକ ଶୁଭିଲା ନାହିଁ ?

ହେ ପ୍ରଭୁ ମୋ ମାର ଆଶା ପୂରଣ କର ।

ହାରାମଣିଙ୍କ ଦେହ ବହୁତ ଖରାପ । କିଛି ଖାଉନାହାଁନ୍ତି, ବିଛଣାରେ ପଡ଼ିଛନ୍ତି । ଲୋକନାଥ ଡାକ୍ତର ଡାକି ଆଣିଲେ, ଡାକ୍ତର କହୁଛନ୍ତି - ପିଲା ହେବ ।

ଲୋକନାଥ, ହାରାମଣି ଆଶ୍ଚର୍ଯ୍ୟ ହୋଇଗଲେ । କଣ ସେ ଶୁଣୁଛନ୍ତି । ସ୍ୱପ୍ନ ନା ସତ୍ୟ । ପ୍ରଭୁ ସତେ ମାଙ୍କ ଆଶା ପୂରଣ କରିବେ । ହେ, ପ୍ରଭୁ କାଶୀ ବିଶ୍ୱନାଥ, ପୁଅଟିଏ ଦିଅ, ତୁମ ନାଁ ରଖିବୁ ।

ହାରାମଣିଙ୍କର ପିଲାହେବ, ଗାଁ ଯାକ ଚହଳ ପଡ଼ିଛି । ପୋଖରି କୂଳେ ମାଇପେ ସବୁ ଗାଧୋଉଛନ୍ତି, ସଉରି ନାନୀ କହିଲା ଦେଖିଲ, ଲୋକାମାଇପର ପିଲାହେବ । ମୁଁ କହିଲାରୁ ଲୋକା, ତା ମାଇପ ଲିଙ୍ଗରାଜ ମହାପ୍ରଭୁଙ୍କ ପାଖକୁ । ପ୍ରଭୁ ତା ଗୁହାରି ଶୁଣିଲେ ? ଆହା ଲୋକା ବୋଉ ନାନୀଟା ଥାଆନ୍ତି କି, ଟିକେ ଆଖି ତାର ଦେଖିଥାଆନ୍ତା । କେତେ ବିକଳ ହଉଥିଲା, ନାତି, ନାତୁଣୀ ଦେଖିବ ବୋଲି । ହଉ ଭଗବାନ ତାକୁ ଖଲାସ କରନ୍ତୁ, ଲୋକାବୋଉର ବଂଶ ରହୁ ।

ଗାଧୋଇ ପାଧୋଇ ସମସ୍ତେ ଘରକୁ ଗଲେ । ହାରାମଣିର ଦେହ ଭଲ ରହୁନାହିଁ । ଲୋକନାଥ ଘରକୁ ଏକା ।

ଜମିବାଡ଼ି ଘରଦ୍ୱାର ସବୁଦାୟିତ୍ୱ ତାଙ୍କ ଉପରେ । ମଝିରେ ମଝିରେ ସଉରି ନାନୀଟି ସାହାଯ୍ୟ କରେ । ମା ତ ମଲା ଗାଁ ଲୋକଙ୍କୁ ଧରି ଚଳିବା କଥା ।

ସଉରି ନାନୀଟି ଗାଁ ଯାକଙ୍କର ନାନୀ, କାହାର ଦେହ ଖରାପ ହେଲେ, କାହାର ପିଲା ହେଲେ ସଉରିନାନୀ କି ଡାକରା ଆସେ । ସଉରି ନାନୀଟି ଦୁଃଖୀ । ସ୍ୱାମୀ ମଲା, ପୁଅଟା ଛତରା ହୋଇ କୁଆଡ଼େ ଗଲା । ଦୁଃଖ

ତାକୁ ଲାଗେ ନାହିଁ । ଯିଏ ପଚାରେ ଆଲୋ ନାନୀ ପୁଅ ତୋର କୁଆଡ଼େ ଗଲା । ସେ, କହେ, କାହିଁକି, ପୁଅ, ପୁଅ ହଉଛ, ଯାହାର ହାତଧରିଥିଲି ସେ ତ ମୋତେ ସହିଲା ନାହିଁ । ପୁଅ କଣ ମୋତେ ନିହାଲ କରିବ । ଯଦି ପୁଅ ହବ ଘରକୁ, ମଣିଷ ପରି ମଣିଷ ହେଲେ ପୁଅ । ଏମିତି ଛତରା, ବାଲୁଙ୍ଗା ପୁଅ ହବା କଣ ଦରକାର, ପୁଅ ନ ହେବା ଭଲ । ତୁମେ କଣ ମୋର ପୁଅ ନୁହଁ । ପୁଅ ଥିଲେ ମଲାବେଳକୁ କାନ୍ଧରେ ନେଇ ମୁଠାଏ ନିଆଁ ଦେଇଥାନ୍ତା । ତୁମର କଲେ ନାନୀକି ନେଇ ମୁଠାଏ କଣ ନିଆଁ ଦବ ନାହିଁ । କହୁନା ଠିଆ ହୋଇଛ କଣ ?

ଆଉ କେହି କିଛି କହନ୍ତି ନାହିଁ । ସଉରିନାନୀଟି ସମସ୍ତଙ୍କର ।

ଆଜି ହାରାମଣି କଷ୍ଟ ପାଉଛି । ଲୋକନାଥ ଦୌଡ଼ିକରି ଗଲେ ସଉରିନାନୀ ପାଖକୁ, ସେ ଆସିଲା ।

ହାରାମଣି ବହୁତ କଷ୍ଟ ପାଉଛି, ଲୋକନାଥ ବ୍ୟସ୍ତ ହୋଇପଡୁଛନ୍ତି ।

ରେ ଲୋକା, ଡାକ୍ତର ଡାକେ ?

କଣ କରିବି ନାନୀ କେମିତି ଯିବି, ନଈ ବଢ଼ିଛି, ଡାକ୍ତରଖାନାଟା ନଈ ଆରପାରି ? ନାଉରିଆ ନଥିବ ।

ସେ ପାଟିକରି ଉଠିଲା, ଆରେ କି କଥା କହୁଛୁ ? ଆର ସାହି ପଧାନ ପୁଅକୁ ଡାକ, ଦୁଇଜଣ ମିଶି ଲଟକଣ ନେଇ ଯାଅ, ଆଉ କଣ ମାଇପଟା ମରିବ ?

ମରିବା ଶୁଣି ଲୋକନାଥଙ୍କ ଦେହ କଣ ହୋଇଗଲା । ସେ, ଆର ସାହି ପଧାନପୁଅକୁ ଡାକି, ବାଡ଼ିଟା ଲଣ୍ଠଟା ନେଇ ଡାକ୍ତରଖାନା ଗଲେ, ନଈ କୂଳରେ ପହଞ୍ଚି ଦେଖିଲେ, ଡଙ୍ଗା କୂଳରେ ବନ୍ଧା ହୋଇଛି ନାଉରିଆ ନାହିଁ ।

ଲୋକନାଥଙ୍କୁ ଅନ୍ଧାର ଦେଖାଯାଉଛି, ହାରାମଣି, ଦେହ କଣ ହେଲା, ହେ କାଶୀବିଶ୍ୱନାଥ ।

ସେ, ଡାକୁଛନ୍ତି ହେ ନାଉରି ଆ ଭାଇ, କୁଆଡ଼େ ଗଲ ? ଇରେ। ଚଞ୍ଚଳ ଆସ, ନ ହେଲେ ମୋ ଭେଳା ବୁଡ଼ିଯିବ ?

ନାଉରିଆ ଘର ସେହି ପାଖରେ। ଝାଟି ମାଟି ଘରଟିଏ କରି ରହିଛି। ଗାଁ କଥା, କାହାର ବିପଦ, ଆପଦ, ପଡ଼ିବ ସେ, ଡଙ୍ଗାଛାଡ଼ି କୁଆଡ଼େ ଯିବ।

ଲୋକନାଥଙ୍କର ଡାକଶୁଣି ନାଉରିଆ ନିଦ ମଳ ମଳ ହୋଇ ଉଠି ଆସିଲା।

- ଇରେ, ଚଞ୍ଚଳ ଡଙ୍ଗା କାଢ଼ ? କିଏ କି ତୁମେ ?

ମୁଁ ଲୋକାନନା। ମୋ, ସ୍ତ୍ରୀ ଦେହ ଖରାପ। ଡାକ୍ତର ଡାକିବାକୁ ଯିବି, ହେ କାଶୀବିଶ୍ୱନାଥ।

ନାଉରିଆ ଡଙ୍ଗା ଚଳାଇଲା; ଲୋକନାଥ ଓ ପଧାନପୁଅ ଗଲେ। ନଈ ପାର ହୋଇ ଡାକ୍ତରଖାନାରେ ପହଁଞ୍ଚିଲା ବେଳକୁ, ରାତି ଦ୍ୱିପହର। ଡାକ୍ତର ବାବୁ ଘୁଙ୍ଗୁଡ଼ି ମାରୁଛନ୍ତି।

ସେଠାରେ ପହଞ୍ଚି ଲୋକନାଥ ଡାକ ପକାଇଲା ଡାକ୍ତରବାବୁ, ଅଛନ୍ତି କି ?

ଡାକ୍ତର ବାବୁଙ୍କ ନିଦ ଭାଙ୍ଗିଗଲା। ଶଳା ରାତି ଅଧରେ ନଈବଢ଼ି, ମଣିଷକୁ ମାରିବେ ନା କଣ ?

ଡାକ୍ତର ବାବୁ ଦୁଆର ମୁହଁକୁ ଆସି ପଚାରିଲେ କିଏ ସେ ?

-ଆଜ୍ଞା ମୋ ଗର ହରିପୁର। ମୋ ନାଁ ଲୋକନାଥ। ମୋ ସ୍ତ୍ରୀ ବହୁତ କଷ୍ଟ ପାଉଛି, ଆଜ୍ଞା ଧର୍ମ ହେବ ଟିକେ ଆସନ୍ତୁ?

- ହଉ ଚାଲ ? ସରକାର ଘରେ କି ଚାକିରୀ କଲା। ମଣିଷଟିକେ ଶୋଇ ପାରିବ ନାହିଁ। ପଇସାଟିଏ ନବ ନାହିଁ ଖାଲି ବେଠି ଖଟିବା କଥା। ସରକାର ଗୋଟିଏ ଦିକ୍ଷା ନେଇଛନ୍ତି ପ୍ରାଇଭେଟ୍ ପ୍ରାକ୍ଟିସ୍ ହେବ ନାହିଁ, ଲୋକଙ୍କୁ ବି ସୁବିଧା। କଣ କରିବା, ଚାକିରୀ କଲେ ଅବସ୍ଥା ହବା କଥା, ନ କଲେ ବି ମାଇପ ପିଲା ମଲେ।

ଲୋକନାଥ ପଧାନ, ଡାକ୍ତର ବାବୁ, ପହଞ୍ଚିଲେ ।...

ଲୋକନାଥଙ୍କ ପାଟି ଶୁଣି ସଉରିନାନୀ ଦୌଡ଼ି ଆସିଲା । ରେ, ଲୋକା, ଇରେ ଡାକ୍ତରବାବୁ ଆସିଲେ ? ଠାକୁରଙ୍କ କୃପାରୁ ପୁଅଟିଏ ହୋଇଛି ମାତ୍ର ହାରାମଣିର ଚେତା ନାହିଁ । ପାଣି ମୁହଁରେ ଛାଟିଲି, କଣ କରିବି କହ, ଡାକ୍ତରବାବୁ ଟିକେ ଦେଖନ୍ତୁ ?

ଡାକ୍ତରବାବୁ ଘର ଭିତରକୁ ପଶିଗଲେ । ହାରାମଣିକୁ ଦେଖି ପଳାଇ ଆସିଲେ, ଡାକ୍ତର ବାବୁ କଣ କୁହ ?

କଣ କହିବି, ତୁମ ସ୍ତ୍ରୀ ଆଉ ନାହାଁନ୍ତି । ଶେଷ ମୁହୂର୍ତ୍ତରେ ଡାକିଲେ ମୁଁ କଣ କରିବି । ଲୋକନାଥ ମୁଣ୍ଡ ବାଡ଼େଇ ଦେଲେ ଏବଂ କହିଲେ ଆଜି ହାରାମଣି ତୁମେ ବଂଶ ରକ୍ଷା କରିଛ, କିନ୍ତୁ କଣ କଲ, ମୋ କଥା ଭାବିଲ ନାହିଁ । ଯାହାକୁ ଦେଇଛ ସେ କିପରି ଚଳିବ । ମା'ର ଆଶୀର୍ବାଦ ମୋ ଉପରେ ପଡ଼ିଲା । ମା'ର ଅଭିଶାପ ବି ପଡ଼ିଲା । ହେ ପ୍ରଭୁ ମୋ ପୁଅକୁ ମଣିଷକର ହାରାମଣିର ନାଁ ରହୁ ।

ରେ, ଲୋକା, ଏପରି ବାୟା ବାତୁଳାଙ୍କ ପରି କଣ ହଉଛୁ, ପୁଅକୁ ଚାହାଁ ?

ପୁଅଟି ନାଁ ବିଶ୍ୱନାଥ - ସଉରି ନାନୀ ପାଖରେ ଅଛି । ଦୁଃଖେସୁଖେ ଚଳୁଛି । ତାକୁ ଆଉ ରହିବାକୁ ଭଲ ଲାଗୁନାହିଁ । ସେ, ସବୁବେଳେ କହୁଛି, ରେ, ଲୋକା, ହାତକୁ ଦି ହାତ ହୋ ?



# ଶେଷ ମୂର୍ଚ୍ଛନା

ମହାନଦୀ କୂଳ, ଜହ୍ନଆଲୁଅ ଆକାଶରେ ବିଛାଡ଼ି ହୋଇ ପଡ଼ିଛି। କାଚ କେନ୍ଦୁପରି ପାଣି ଦୋହଲି ଉଠୁଛି। ପୋଲଉପରେ ବସିଛନ୍ତି ଚନ୍ଦ୍ରମୋହନ ଆଉ ମଧୁଲିକା। ଆକାଶରେ ରୂପେଲି ଚାନ୍ଦଟା ହସି ଉଠୁଛି। ଚନ୍ଦ୍ରମୋହନ, ମଧୁଲିକାର କଲେଜ ସାଥି ମଧୁଲିକା ଶାନ୍ତଶିଷ୍ଟ ସରଳ ଝିଅ। ତାର ମା ନାହିଁ। ଭାଇ ମିଲିଟେରି ବିଭାଗରେ କାମ କରେ । ବର୍ତ୍ତମାନ ମଧୁଲିକା ହଷ୍ଟେଲରେ ତା'ର ଭଲମନ୍ଦ ପାଇଁ କେହି ଦାୟୀ ନୁହେଁ। ଚନ୍ଦ୍ରମୋହନର ବାପା ଜଣେ ବଡ଼ ବିଜିନେସ୍‌ମ୍ୟାନ। ସେଥିପାଇଁ ଚନ୍ଦ୍ରମୋହନ ପାଖରେ ପଇସାର ଅଭାବ ନଥାଏ।

ପ୍ରତିଦିନ ଚନ୍ଦ୍ରମୋହନ, ମଧୁଲିକା ମହାନଦୀ କୂଳକୁ ଯାଆନ୍ତି। ସେଠିବସି ନିଜର ଭବିଷ୍ୟତ ଚିନ୍ତା କରନ୍ତି। ସନ୍ଧ୍ୟା ସାତଟା ବେଳକୁ ଫେରନ୍ତି। ଚନ୍ଦ୍ରମୋହନ ଯାଏ ତା ଘରକୁ। ମଧୁଲିକା ତା ହଷ୍ଟେଲକୁ ଫେରେ। କ୍ରମେ, କ୍ରମେ ଘନିଷ୍ଠତା ବଢିବାକୁ ଲାଗିଲା।

ମଧୁଲିକା ମନରେ କେତେ ଚିନ୍ତା, ସତେ କଣ ଚନ୍ଦ୍ରମୋହନ ମୋତେ ଭଲ ପାଏ ? ମୋତେ ଯଦି ସେ ହତାଶକରେ ମୁଁ କଣ କରିବି ? ସେ ମନକୁ ଦୃଢ଼ କରିଦେଲା। ଏଥରକ ସେ ପଚାରିଦେବ ? ଗୋଟିଏ ଶେଷ ନିଷ୍ପତି ଦରକାର ?

ଭୀଷଣ ବର୍ଷା ଆସୁଛି - ଆକାଶ ମେଘାଛନ୍ନ, ଘନ ଅନ୍ଧାର। ସତେକି, ଅଜସ୍ର ବର୍ଷା ଅଜାଡ଼ି - ହୋଇଯିବ।

ସେଦିନ ଚନ୍ଦ୍ରମୋହନ, ମଧୁଲିକା ମହାନଦୀ କୂଳକୁ ଯାଇପାରିଲେ ନାହିଁ। ହଷ୍ଟେଲ ପାଖରେ ଅଛି, ସୁନ୍ଦର ପୁଷ୍ପ ଉଦ୍ୟାନ, ଦୁହେଁ ଗୋଟିଏ ଗଛମୂଳେ ବସିଲେ।

ମଧୁଲିକା କହିଲା - ଚନ୍ଦ୍ରମୋହନ - ମୁଁ ତୁମକୁ ଗୋଟିଏ କଥା ପଚାରିବି -

- କଣ ?

- ତୁମେ କଣ ସତରେ ମୋତେ ଏତେ ଭଲ ପାଅ

- କାହିଁକି ? ତୁମର କଣ ମୋ ଉପରେ, ବିଶ୍ୱାସ ନାହିଁ ?

- ତୁମେ ଯଦି ମୋତେ ଭଲ ପାଅ, ତୁମ ବାପାଙ୍କୁ କୁହ ଆମ ବାହାଘର ପାଇଁ।

ସେ ମଧୁଲିକାର କାନ୍ଧରେ ହାତ ପକାଇ କୋଳକୁ ଆଉଜାଇ ଆଣିଲା। ଧେତ୍ ପାଗଳି, ତଥାପି କଣ ତୋର ବିଶ୍ୱାସ ହେଉନାହିଁ। ତୁ ମୋର ଜୀବନ। ତତେ, ଛାଡ଼ି ମୁଁ ଦଣ୍ଡେ ରହିପାରୁନାହିଁ। ତୋ ପାଖକୁ ଚାଲିଆସୁଛି। ତୁ ଆହୁରି ଅବିଶ୍ୱାସ କରୁଛୁ ମୋତେ ? ବିବାହ କଥା କହୁଛୁ ମୁଁ ଏମ ସିଏ ପାସ ନକଲେ ବାପା କଣ ରାଜି ହେବେ ? ଏହି ବନ ଦେବତା ଆମର ସାକ୍ଷୀ।

ଚନ୍ଦ୍ରମୋହନ ଏମ୍ ସିଏ ପରୀକ୍ଷା ଦେଇଛି। ମଧୁଲିକା ଚାହିଁ ବସିଛି, କେଉଁଦିନ ପରିକ୍ଷା ଫଳ ବାହାରିବ, ତାର ଆଶା ପୁରଣ ହେବ।

ଆଜି ଚନ୍ଦ୍ରମୋହନର ପରୀକ୍ଷା ଫଳ ବାହାରିବ, ଦିନବନ୍ଧୁ ବାବୁ ଏବଂ ପ୍ରଭା ସମାଜକୁ ଅପେକ୍ଷା କରି ବସିଛନ୍ତି।

ପାଖରେ ମହାଦେବମନ୍ଦିର ମଧୁଲିକା ସକାଳୁ ଉଠି ଗାଧୋଇପଡ଼ି ବାକ୍ସରୁ ଖଣ୍ଡେ ସଫାଲୁଗା କାଢି ପିନ୍ଧିଲା। ବଗିଚାରୁ ଫୁଲ ତୋଳି, ମନ୍ଦିରକୁ ଗଲା। ଠାକୁରଙ୍କ ଉପରେ ଫୁଲତକ ଦେଇ ତଳେ ଆଣ୍ଠୁମାଡ଼ି ମୁଣ୍ଡିଆ ମାରିଲା। ହେ, ପ୍ରଭୁ ତୁମ ପାଖରେ ମୋର ଏତିକି ମାତ୍ର ଗୁହାରି, ମୁଁ ନିରାଶ୍ରୟା। ମୋର ବାପ ନାହିଁ କି, ମା ନାହିଁ । ମୁଁ ଧନମାଗୁ ନାହିଁ କିମ୍ବା ଐଶ୍ବର୍ଯ୍ୟ ମାଗୁନାହିଁ।

ମୁଁ ଯାହକୁ ଜୀବନଠାରୁ ଅଧିକ ଭଲ ପାଏ ମୋତେ ତାକୁ ଦିଅ।

ତା ଆଖିରୁ ଲୁହ ବହି ଚାଲିଛି। କଣ୍ଠ ରୁଦ୍ଧ ହୋଇ ଯାଉଛି। ତାକୁ ଲାଗୁଛି ଅଙ୍ଗ, ପ୍ରତ୍ୟଙ୍ଗ ଶିଥିଳ ହୋଇ ପଡୁଛି।

ସେ ତାର ଆରାଧ୍ୟ ଦେବତାଙ୍କ ପାଖରେ ହାତଯୋଡ଼ି ବସିଛି। ସତେକି ସିଏ ପୃଥିବୀର ଅନ୍ୟ ସବୁ କିଛି ଭୁଲି ଯାଇଛି।

ମହାଦେବ ମନ୍ଦିରର ପୂଝାରି ଆସି ଆଳତୀ କଲା । ଘଣ୍ଟିଶବ୍ଦରେ ମଧୁଲିକା ଚମକି ପଡ଼ି ଉଠି ହଷ୍ଟେଲକୁ ଆସିଲା । ସେ ଆଉ ଖାଇଲା ନାହିଁ । ଖଟ ଉପରେ ମୁହଁ ମାଡ଼ି ଶୋଇ ରହିଲା ।

ତାର ଆଜି ମନେ ପଡୁଛି ଅତୀତ କଥା - ମହାନଦୀ କୂଳରେ କେତେ ଜହ୍ନରାତି ନକଟିଛି । ଚନ୍ଦ୍ରମୋହନ ତାକୁ ଠକିବ ନାହିଁତ ? ସେ, ବିଚଳିତ ହୋଇ ଉଠି ଝରକା ପାଖରେ ଠିଆ ହେଲା । ତୋଟା ଆଡ଼କୁ ଚାହିଁ, ମନତାର ଉଲ୍ଲସି ଉଠିଲା । ଚନ୍ଦ୍ରମୋହନ ଏହି ଦେବତାଙ୍କୁ ସାକ୍ଷୀରଖି ତାକୁ ବାହାହେବ ବୋଲି ସେ ଜବାବ ଦେଇଛି ।

ତାର ମନରେ ଅସୀମ ଆନନ୍ଦ ?

ଆଜି ଚନ୍ଦ୍ରମୋହନର ପରୀକ୍ଷାଫଳ ବାହାରିଛି । ସେ, ଫାଷ୍ଟ୍‌କ୍ଲାସ ପାଇଛି ।

ଚନ୍ଦ୍ରମୋହନ ଭାବିଲା, ଯାଉଛି ଯିବି ହଷ୍ଟେଲକୁ । ମଧୁଲିକା ଫଳ ଯାଣିବା ପାଇଁ ଅପେକ୍ଷ୍ୟା କରିଥିବ । ସେ ଆନନ୍ଦରେ ହଷ୍ଟେଲକୁ ଆସି ଗେଟ୍ ପାଖରେ ଠିଆହେଲା ।

ଆଜି ମଧୁଲିକାର ଆନନ୍ଦତ କହିଲେ ନ ସରେ । ସେ ସମାଜରୁ ପଢିଛି ଚନ୍ଦ୍ରମୋହନ ଫାଷ୍ଟକ୍ଲାସ୍ ପାଇଛି । ମଧୁଲିକା ଓ ତା ସାଙ୍ଗମାନେ - ହଷ୍ଟେଲର ଛାତ ଉପରେ ଖୁସିଗପ କରୁଛନ୍ତି ।

ହଷ୍ଟେଲର ଚାକରାଣୀ ମିନତି ଡାକିଲା - ମଧୁଅପା ତୁମକୁ କିଏ ଗେଟ୍ ପାଖରେ ଡାକୁଛନ୍ତି ଚାହିଁଲ ?

ସେ, ଗେଟ୍ ଆଡ଼କୁ ଚାହିଁ ଆନନ୍ଦରେ ତଳକୁ ଉହ୍ଲାଇ ଗେଟ୍ - ପାଖରେ ପହଞ୍ଚିଲା ।

କଙ୍ଗ୍ରାଚୁଲେସନ ।..................

ଚନ୍ଦ୍ରମୋହନ ମଧୁଲିକାକୁ ଡାକିନେଲା ସେହି ବାଲିଚର ଉପରକୁ ? ଯେଉଁଠି ତାଙ୍କର ଅତୀତ ଭବିଷ୍ୟତର କଳ୍ପନା ।......

ମହାନଦୀକୂଳରେ ଦୁଇଜଣ ବସିଛନ୍ତି । ପାଣି ଦୋହଲି ଉଠୁଛି । ଦିଜଣ ପାଣି ଭିତରକୁ ଚାହିଁଛନ୍ତି । ଆକାଶରେ ସୂର୍ଯ୍ୟଅସ୍ତ ହୋଇଆସି, ଡାହାଣିଆ ଖରା ମଧୁଲିକାର ମୁହଁକୁ ଉଜ୍ଜ୍ୱଳ କରିଦେଉଛି ।

ଚନ୍ଦ୍ରମୋହନ ବିସ୍ମିତହୋଇ ମଧୁଲିକାର ମୁହଁକୁ ଚାହିଁରହିଛି ।

ଚନ୍ଦ୍ରଭାଇ କଣ ମୋ ମୁହଁକୁ ଚାହିଁଛ ?

ହଁ ତତେ ଦେଖୁଥିଲି, ତୁ, ଆଜି କେତେ ସୁନ୍ଦର ଦେଖାଯାଉଛୁ ଯେପରି ପୂର୍ଣ୍ଣିମାର ଚାନ୍ଦ ।

କେଉଁଦିନ ପ୍ରଭୁ ଆମର ମନସ୍କାମନା ପୂର୍ଣ୍ଣ କରିବେ ?

ମଧୁଲିକା ହସି ଉଠିଲା । କଣ ଏମିତି କହୁଛ ? ପ୍ରଭୁ ଆମର ମନସ୍କାମନା କେଉଁ ଦିନରୁ ପୂର୍ଣ୍ଣ କରିଛନ୍ତି । ଯେଉଁ ଦିନ ଆମେ ବନଦେବତାଙ୍କୁ ସାକ୍ଷୀ ରଖି ବିବାହ କରିଥିଲେ ।

ଚନ୍ଦ୍ରମୋହନ ମୁହଁ ସୁଖାଇ ଦେଇ କହିଲା - ହଁ ତୁ, ଯାହାକହିଲୁ ସତ ? ତୋର ସିନା କେହି ନାହାନ୍ତି । ମୋର ତ ପୁଣି ବାପ ମା ଅଛନ୍ତି ?

ମଧୁଲିକା ଚନ୍ଦ୍ରର ହାତକୁ ଧରି ପକାଇଲା । ତୁମ ବାପ ମା, ଯଦି ମନା କରିବେ, ତାହା ହେଲେ ତୁମେ କଣ ମୋତେ ........ କୁହ ?

ମଧୁଲିକା ଅସ୍ଥିର ହୋଇ ଉଠି କହିଲା - କିନ୍ତୁ ମୁଁ ତାହା କରିପାରିବି ନାହିଁ । ସେହି ବନ ଦେବତା, ମହାଦେବଙ୍କୁ ହାତଦେଖାଇ କହୁଛି, ତୁମେ ଯଦି ମୋତେ ବିବାହ ନକରିବ, ମୁଁ, ଆଜୀବନ କୁମାରୀ ହୋଇରହିବି । ତୁମ ବାପା ବଡ଼ଲୋକ ପଇସା ଅଛି । ମୋର କିନ୍ତୁ କେହି ନାହିଁ । ଏତକ କହି ସେ କଇଁ କଇଁ ହୋଇ କାନ୍ଦିବାକୁ ଲାଗିଲା ।

ଆରେ ଏମିତି କାନ୍ଦୁଛୁକଣ ? ମୁଁ କଣ ମନାକଲି ?

ଚନ୍ଦ୍ରମୋହନ ପକେଟରୁ ରୁମାଲ କାଢି ମଧୁଲିକାର ମୁହଁକୁ ପୋଛିଦେଲା । ତୁ କାନ୍ଦନା । ମୁଁ ସବୁ ଜାଣିଛି । ବାପାଙ୍କୁ କହିବି । ସେ ରାଜି ହେଲେତ ଭଲ ନହେଲେ ଶେଷ ମୂହୁର୍ତ୍ତ ପର୍ଯ୍ୟନ୍ତ ଚେଷ୍ଟାକରିବି । ଉଠୁ, ଚାଲ-ଯିବା । ରାତି ହୋଇ ଯାଉଛି ।

ଦୁଇଜଣଯାକ ସାଙ୍ଗ ହୋଇ ଆସିଲେ । ସେ, ମଧୁଲିକାକୁ ହଷ୍ଟେଲରେ ଛାଡ଼ି ଘରକୁ ଆସିଲା ।

ଚନ୍ଦ୍ରମୋହନ ଡ୍ରଇଁ ରୁମରେ ମୁଣ୍ଡରେ ହାତ ଦେଇ ବସିଛି ।

ରାତି ଏଗାରଟା ବାଜିଲାଣି । ପ୍ରଭା, ଆସି ହଲାଇଦେଲେ । କିରେ ? ବସିଛୁ କଣ ? ଖାଇବୁ ଯାଉ ନାହୁଁ । କଣ ବସି ଭାବୁଛୁ ?

ମାଙ୍କ ପାଟିଶୁଣି ସେ ଚମକି ପଡ଼ିଲା । ନାଁ ମୁଁ ଖାଇବି ନାହିଁ ମୋ ଦେହ ଭଲ ଲାଗୁ ନାହିଁ ।

ସେ ମଧୁଲିକାକୁ ଭାବି ଭାବି ରାତିରେ ଶୋଇ ପାରିଲା ନାହିଁ । ସରଳା, ନିରୀହା ମୁହଁଟା ତା ଆଖି ଆଗରେ ନାଚି ଉଠିଲା ।

ସକାଳ ଆଠଟା - ଦିନବନ୍ଧୁ ବାବୁ ଡ୍ରଇଁ ରୁମ୍‌ରେ ବସିଛନ୍ତି । ପ୍ରଭା ଯାଇ ପାଖରେ ବସିଲେ । ଶୁଣୁଛ ? ଚନ୍ଦ୍ରର କଣ ହୋଇଛି ସେ, ଖାଉ ନାହିଁ । ମୁହଁ ଶୁଖାଇ - ବସିଛି ।

ସେ ଖାଉନାହିଁ ମୁଁ, କଣ କରିବି ? ତୁମେ ତାର ମା, ତାକୁ ପଚାର ? ସେ କଣ କହୁଛି ?

ସ୍ୱାମୀଙ୍କ କଥା ଶୁଣି ପ୍ରଭା, ସେଠାରୁ ଚାଲିଆସି ରୋଷାଇଘରକୁ ଗଲେ । ପନିକିଟା ପକାଇ ପରିବା କାଟୁଛନ୍ତି ।

ରାମା କହିଲା - ମା, ସାନବାବୁ ଦାଣ୍ଡପିଣ୍ଡା ଚ୍ୟାର ଉପରେ ମୁଣ୍ଡରେ ହାତଦେଇ ମୁହଁ ଶୁଖାଇ ବସିଛନ୍ତି ।

ପ୍ରଭା କହିଲେ - ଦାଣ୍ଡରେ କିଏ ଅଛନ୍ତି କି ?

ନା କେହି ନାହାଁନ୍ତି

ହଉ ? ମୁଁ ପରିବା କାଟିଦେଲି ତୁମେ ରାନ୍ଧ । ମୁଁ ଚନ୍ଦ୍ର ପାଖକୁ ଯାଏ ।

ଚନ୍ଦ୍ରମୁଣ୍ଡରେ ହାତଦେଇ ବସିଛି । ପ୍ରଭା ଯାଇ, ପାଖରେ ବସି ପିଠିକୁ - ଆଉଁସି ଦେଲେ । ବାପା, ତୋର କଣ ହୋଇଛି, ମୋ ଆଗରେ କହ ?

ମାଙ୍କ କଥାଶୁଣି ଚନ୍ଦ୍ରମୋହନ ଆଖି ଛଳଛଳ କରି କହିଲା ମା ମୁଁ କଣ କହିବି ? ମୁଁ ଜୀବନରେ ଭୁଲ କାମଟିଏ କରିଛି । ବାପାଙ୍କୁ କହିବୁ, ମୋ ବିବାହ ପାଇଁ ବ୍ୟସ୍ତ ହେବେ ନାହିଁ ମୁଁ ଗୋଟିଏ ଝିଅକୁ ବିବାହ କରିବି ବୋଲି କଥା ଦେଇଛି । ସେ ଝିଅର ବାପ ନାହିଁ କି ମା ନାହିଁ । ସେ ନିରାଶ୍ରୟୀ । ତାର, ମୋ ଉପରେ ସବୁ ଆଶା ଭରସା । ତାରି, ଚିନ୍ତା ରେ ଆଜି ମୋର ଏହି ଅବସ୍ଥା ।

ହଁ ତୁ ଯାହା କହିଲୁ ମୁଁ ବୁଝିଲି କିନ୍ତୁ ତୋ ବାପା କଣ ବୁଝିବେ? ଘରରତ ପୁଣି ମାନ ସମ୍ମାନ ଅଛି । ତାଙ୍କର କେତେ ଆଶା ତୁ ପାଠ ପଢିବୁ । ମଣିଷ ହେବୁ । ବୁନିଆଦି ଘରୁ ଝିଅ ଆଣିବେ । ସେ ଘରର ବଡ଼ ବୋହୂ ହେବ । କୂଳ ଉଜ୍ଜ୍ୱଳ କରିବ । ଆଜି ତୁ, କଣ କହୁଛୁ ମୁଁ ବୁଝିପାରୁନାହିଁ ! ସେ, ଝିଅ କିଏ ? ତାର, ଜାତି, ପତି କଣ ? ହଉ, ମୁଁ ବାପାଙ୍କୁ ପଚାରେ ।

ସନ୍ଧ୍ୟା ପାଞ୍ଚଟା । ଦିନବନ୍ଧୁ ବାବୁ ବଗିଚାରେ ବସିଛନ୍ତି । ପ୍ରଭା ଚା ନେଇ ପହଞ୍ଚିଲା ।

ପ୍ରଭା ଚା କପଟା ସ୍ୱାମୀଙ୍କ ହାତକୁ ବଢାଇଦେଲେ । ଶୁଣୁଛ ? ଚନ୍ଦ୍ର ନାହିଁ କରିଛି ତା ପାଇଁ ଝିଅ ଠିକ୍ କରିବ ନାହିଁ । ସେ ଝିଅକୁ କଥା ଦେଇଛି । ସେ ଝିଅର ବାପ ମା ନାହିଁ । ସେ, ନିରାଶ୍ରୟୀ । ତେଣୁ ଚନ୍ଦ୍ର ଉପରେ ତାର ସବୁ ଆଶା - ଭରଷା । ତୁମେ, କଣ କହୁଛ ?

ଦିନବନ୍ଧୁବାବୁ ବିରକ୍ତ ହୋଇ ଉଠିଲେ । ପ୍ରଭା ? ତୁମେ କଣ କହୁଛ ? ମୋର କଣ ମାନ ସମ୍ମାନ କିଛି ନାହିଁ ? ଯେଉଁ ଝିଅର ମା, ବାପା, ଜାତି, ଗୋତ୍ର କିଛି ଜଣା ନାହିଁ, ତାକୁ, ମୁଁ, କୂଳ ବୋହୂ କରି ଆଣିବି ? ନାଁ, ତା ମୁଁ କରି ପାରିବି ନାହିଁ । ଚନ୍ଦ୍ର ଯଦି ସେ, ଝିଅକୁ ବିବାହ କରେ, ତାହା ହେଲେ - ଏ ଘରେ ତାର ସ୍ଥାନ ନାହିଁ ।

ପ୍ରଭା ସ୍ୱାମୀଙ୍କ କଥା ଶୁଣି ବିଚଳିତ ହୋଇ ପଡ଼ିଲେ । ଆଖିରୁ ତାଙ୍କର ଲୁହ ଗଡ଼ି ପଡ଼ିଲା । ହେ ପ୍ରଭୁ ମୋତେ କାହିଁକି ବଞ୍ଚାଇଛ ?

ସେ, ବାପ, ଘରେ ସ୍ଥାନ ନ ଦେଇ ପାରନ୍ତି । ମୁଁ ଯେ ମା ? ମୁଁ - କଣ ତାହା କରି ପାରିବି ? ଆଜି ରାତିରେ ଚନ୍ଦ୍ର ସାଙ୍ଗରେ କଥାବାର୍ତ୍ତା କରିବି । ବାପ ତାର, ଯେଉଁଠି ଠିକ୍ କରିବେ, ବିବାହ କରିବାକୁ ପଡ଼ିବ ।

ରାତି ଦଶଟା, ଚନ୍ଦ୍ରମୋହନ ବଗିଚାରେ ବସିଛି। ପ୍ରଭା ଯାଇ ପୁଅ ପାଖରେ ବସିଲେ। ଚନ୍ଦ୍ର ? ତୋ ବିବାହ ପାଇଁ ଯାହା କହିଥିଲୁ, ବାପାଙ୍କୁ କହିବାକୁ। ମୁଁ ସବୁ କହିଲି। କିନ୍ତୁ, ବାପା ରାଜି ନୁହନ୍ତି। କାରଣ, ତାର ବାପା ମା, ନାହିଁ। ଜାତି ଗୋତ୍ର ଜଣାନାହିଁ। ତାଙ୍କର ତ ପୁଣି, ମାନ ସମ୍ମାନ ଅଛି। ବଡ଼ ବଡ଼ ଜାଗାରୁ ପ୍ରସ୍ତାବ ଆସୁଛି, ଆମେ ଭଲଜାଗାରେ ନ କରି, ଅଜଣା, ଅଶୁଣାରେ କାହିଁକି କରିବା। ତୁ ଟିକେ, ଚିନ୍ତା କର ?

ଚନ୍ଦ୍ରମୋହନ। ମୁଣ୍ଡରେ ବଜ୍ର ପଡ଼ିଲା ପରି ଲାଗିଲା। ସେ, ବ୍ୟସ୍ତ ହୋଇପଡ଼ିଲା କହିଲା - କଣ ମୁଁ କହିବି ବାପାଙ୍କର ଯାହା ଇଚ୍ଛା ତା କରନ୍ତୁ। ମୋତେ ଆଉ କିଛି କୁହ ନାହିଁ। ଯାହା ସେ, ଝିଅ ଭାଗ୍ୟରେ ଥିବ।

ପ୍ରଭା ଆଉ ପୁଅକୁ କିଛି ନ କହି ସେଠାରୁ ଚାଲିଆସି, ସ୍ୱାମୀଙ୍କ ଆଗରେ ସବୁ କହିଲେ।

ଦିନବନ୍ଧୁ ବାବୁ। ପୁଅ ପାଇଁ - ଝିଅ ଠିକ୍ କରିବାରେ ଲାଗିପଡ଼ିଲେ। ସେ ମନେ ମନେ ଭାବିଲେ। ଆଜି କାଲି ଯେପରି ଆଧୁନିକ ଝିଅ ଦରକାର, ସେହିପରି କଲେ ଚନ୍ଦ୍ରର ମନକୁ ପାଇବ।

ପୁରୀ ପ୍ରଶାନ୍ତ ପଟ୍ଟନାୟକ ବଡ଼ ଓକିଲ। ତାଙ୍କ ଝିଅ ପାଇଁ ପ୍ରସ୍ତାବ ଆସିଛି। ସେ ଝିଅର ନାଁ କବିତା। ଦେଖିବାକୁ ସୁନ୍ଦରୀ ଓ ଆଧୁନିକା।

ଆଜି ଦିନବନ୍ଧୁବାବୁ, ପ୍ରଭା ଯିବେ ଦେଖିବାକୁ। ମନକୁ ପାଇଲେ, ପୁଅକୁ ପଚାରି ଜବାବ୍ ଦେବେ।

ଦିନବନ୍ଧୁ ବାବୁ, ପ୍ରଭା, ଝିଅ ଦେଖିବାକୁ ପୁରୀ ଯାଇଛନ୍ତି। ଝିଅ ଦେଖି ତାଙ୍କର ମନକୁ ପାଇଛି।

ପ୍ରଶାନ୍ତ ପଟ୍ଟନାୟକ ଜବାବ୍ ଦବାଲାଗି ଦିନବନ୍ଧୁ ବାବୁଙ୍କ ପାଖକୁ ଖବର ପଠାଇଛନ୍ତି।

ତାଆରଦିନ ଦିନବନ୍ଧୁ ବାବୁ ପ୍ରଭାକୁ ପଚାରିଲେ, କଣ ଚନ୍ଦ୍ରକୁ ପଚାରିଲ ?

ନାଁ ମୁଁ ପଚାରି ନାହିଁ। ଆଜି ପଚାରି କହିବି।

ରାତିରେ, ଚନ୍ଦ୍ରମୋହନ ଖାଇବସିଛଇ । ପ୍ରଭା ପଚାରିଲେ, ଆମେ, ପୁରୀ ଯାଇଥିଲୁ । ଝିଅ ଦେଖିଲୁ । ଆମର ପସନ୍ଦ ହୋଇଛି । ତୋର କଣ ମତ ?

ଚନ୍ଦ୍ରମୋହନର ମୁହଁ ଝାଉଁଳି ପଡ଼ିଲା -ମୋତେ କାହିଁକି ପଚାରୁଛୁ ? ତୁ, ବାପା ଯାହା କରିବ କର । ଏହାକହି, ଚନ୍ଦ୍ରମୋହନ ଘର ଭିତରକୁ ଚାଲିଗଲା ।

ପ୍ରଶାନ୍ତ ପଟ୍ଟନାୟକଙ୍କ ଘରେ ବିବାହ ହବାଲାଗି ଜବାବ୍ ଦିଆ ହେଲା । ଫେବୃଆରୀ ଦଶ ତାରିଖରେ ବିବାହ । ଦିନବନ୍ଧୁବାବୁ ପୁଅର ବାହାଘର ପାଇଁ ବ୍ୟସ୍ତ । ନିମନ୍ତ୍ରଣ ପତ୍ର ଚାରିଆଡ଼େ ବଣ୍ଟା ଚାଲିଛି । ଚନ୍ଦ୍ରମୋହନର ସାଙ୍ଗମାନଙ୍କ ପାଖକୁ ନିମନ୍ତ୍ରଣ ପତ୍ର ବଣ୍ଟା ହେଲା । ଚନ୍ଦ୍ରମୋହନର ବିବାହ ଘର - ଧୂମ୍‌ଧାମ୍‌ରେ ଆଗେଇ ଚାଲିଛି ।

ରାତି ଆଠଟା, ମଧୁଲିକା ତା ରୁମ୍‌ରେ କବାଟ ବନ୍ଦ କରି ପଢୁଛି ।

ବାସନ୍ତି କବାଟ ଠକ୍ ଠକ୍ କଲା, ମଧୁ ଅପା, କବାଟ ଖୋଲ ଶୁଭସମ୍ବାଦ ।

ମଧୁଲିକା ଆନନ୍ଦରେ ହସି ହସି କବାଟ ଖୋଲିଦେଲା । କି ଶୁଭ ସମ୍ବାଦ ? ବାସନ୍ତି ନିମନ୍ତ୍ରଣ ପତ୍ରଖଣ୍ଡିକ ତା ହାତକୁ ବାଢ଼ାଇ ଦେଲା ।

ସେ, ନିମନ୍ତ୍ରଣ ପତ୍ରଖଣ୍ଡିକ ଦେଖି ତଳେ ମୂର୍ଚ୍ଛିତ ହୋଇପଡ଼ିଗଲା ।



# ସ୍ନେହର ଆକର୍ଷଣ

ମାଳତୀ କଣ ଭାବିଥିଲା ତା ଜୀବନରେ ଏହିପରି ଧକ୍କା ସେ ପାଇବ।

ବିନୋଦ, ସିଏ ଥିଲା ତାର କ୍ଲାସମେଟ୍। ବିନୋଦର ରୂପ, ଗୁଣ, ପଢ଼ାରେ କୃତିତ୍ୱ ତାକୁ ମୁଗ୍ଧ କରି ଦେଇଥିଲା। ସେଥିପାଇଁ ବାପାଙ୍କ କଥା ନ ମାନି, ଜାତି, କୁଳ ନବିଚାରି ସେ ବିବାହ କରିଥିଲା ବିନୋଦକୁ ?

ମାଳତୀ ଥିଲା ଧନୀର କନ୍ୟା ଏବଂ ବ୍ରାହ୍ମଣ। ବିନୋଦ ଦରିଦ୍ର ଏବଂ ଜାତିରେ କରଣ। ବିନୋଦ ଓ ମାଳତୀ, ଯେତେବେଳେ କଲେଜରେ ପଢୁଥିଲା। ମାଳତୀ ତା ବାପାଙ୍କୁ କହି, କିଛି କିଛି, ସାହାଯ୍ୟ କରୁଥିଲା।

ମାଧବବାବୁ ବଡ଼ ଓକିଲ। ତାଙ୍କ ନାଁ ଚାରିଆଡ଼େ ବିଖ୍ୟାତ। ଏକ ମାତ୍ର କନ୍ୟା ମାଳତୀ। ଝିଅ ଯାହା କରେ ସେ ଦିନେ କିଛି କହନ୍ତି ନାହିଁ। ଏବଂ ମନେ ମନେ ଭାବନ୍ତି ମାଳ ତା ସାଙ୍ଗ ବିନୋଦକୁ ସାହାଯ୍ୟ କରୁଛି କରୁ। ଗରିବ ପିଲାଟି ମଣିଷ ହୋଇଯାଉ ପାଠପଢ଼ି। ସିଏ କଣ ଜାଣିଥିଲେ ଝିଅ ଜାତି ଭେଦ, ନ ବିଚାରି, ବୁଢ଼ା ବାପ କଥା ନମାନି, ତାକୁ ବାହାହେବ ? ସେ, ଧକ୍କା ଜୀବନରେ ସେ, ଭୁଲି ପାରୁ ନାହାନ୍ତି।

ମାଧବବାବୁଙ୍କର ଆଜି ସବୁ ମନେ ପଡ଼ିଯାଉଛି। ପୁଅ ନଥିଲା। ମାଳ ସାନଟିଏ ହୋଇଥିଲା, ମା, ତାର ସେ ପୂରକୁ ଗଲା। ତାର ମୁହଁକୁ ଚାହିଁ ରହିଲି। ଇଚ୍ଛା କରିଥିଲେ ଆଉ ଗୋଟିଏ ବିବାହ କରିଥାନ୍ତି। ମା ତାର ମଲାବେଳେ ମୋତେ କହିଥିଲା, ଆଉ ବିବାହ ହବ ନାହିଁ। ମାଳକୁ ଚାହିଁ ରହିବ। ମାଳର ଚଲାପଥରେ କଣ୍ଟା ଦବ ନାହିଁ।

ଏବେ, ମାଳ କଣ ନ କଲା ? ବୁଢ଼ା ବାପଟା କଥା ଟିକେ ଭାବିଲା ନାହିଁ।

ଏ ସମ୍ପତ୍ତି କାହା ପାଇଁ, ଏ କୋଠା କାହା ପାଇଁ। ସିଏ ତା, ବାଟ କାଟିଲା, ମୁଁ ରହିଲି, କଷ୍ଟ ପାଇବା ପାଇଁ। ଏ ସମ୍ପତ୍ତିରେ କି ମୂଲ୍ୟ ଅଛି। ଯେଉଁଠି ଜୀବନରେ ଶାନ୍ତି ନାହିଁ, ସେଠାରେ ସମ୍ପତ୍ତି ତୁଚ୍ଛ ? ଏମିତି ସବୁ ବେଳେ ଝିଅ କଥା ଭାବି ସେ ଆଖିରୁ ଲୁହ ଗଡ଼ାନ୍ତି।

ମାଳତୀ, ବିନୋଦକୁ ବିବାହ କରି ବାପକୂଳରୁ ଯାଇଛି। କାଲି ସକାଳ ପରି ତାକୁ ଲାଗୁଛି। ସେ, ବାପାଙ୍କ ମୁହଁରେ କହିଥିଲା - ମୁଁ ବିନୋଦ ଛଡ଼ା, ଆଉ କାହାରିକୁ ବି ବାହା କରିପାରିବି ନାହିଁ। ମୋର ଜାତିଭେଦରେ ବିଶ୍ୱାସ ନାହିଁ। ସବୁ ମଣିଷ ସମାନ। ମୁଁ ପ୍ରଭୁଙ୍କ ପାଖରେ ଶପଥ କରିଛି।

ବାପା ରାଗିକରି କହିଥିଲେ - ତୋର ଏ ଘରେ ସ୍ଥାନ ନାହିଁ। ତୁ, ମୋର ଝିଅ ହୋଇ ମୋର ମାନ ସମ୍ମାନ ସାରିଲୁ। ତୁ ମୋର କଣ ଯା, ମୋ ଆଗରୁ।

ମାଳତୀ ଆଗପଛକୁ ନବିଚାରି ମୁହୂର୍ତ୍ତେ ନରହି, ବିନୋଦ ପାଖକୁ ଚାଲି ଆସିଥିଲା।

ବିନୋଦ ଛୋଟ ଚାକିରୀଟିଏ କରିଛି । ଏବଂ ସମୟ ପାଇଲେ କିଛି ବହିପତ୍ର ଲେଖାଲେଖି କରେ। ମାଳତୀ ସ୍ୱାମୀକୁ ତାର ଲେଖା ଲେଖିରେ ସାହାଯ୍ୟ କରେ।

ଦିନକୁ ଦିନ ଅତି ଅଭାବ ହେବାରୁ ମାଳତୀ, ବିନୋଦକୁ ନ କହି ଚାକିରୀ ପାଇଁ ଦରଖାସ୍ତ କରିଥିଲା। ପାଠପଢ଼ିଛି ସେ, ଯୋଗ୍ୟତା ଅଛି।

ମାଳତୀ ବସି ରୋଷାଇ କରୁଛି, ଡାକପିଅନ ଦାଣ୍ଡ କବାଟରେ ଠକ୍ ଠକ୍ କଲା। ରେଜେଷ୍ଟ୍ରି ଚିଠି, ଆସିଛି ?

ବିନୋଦ କବାଟଟି ଖୋଲି, ଚିଠିଟିକୁ ଆଣି ଖୋଲି ପଢ଼ିଲା। ବାଳିକା ସ୍କୁଲରେ ଚାକିରୀ ହୋଇଯାଇଛି। ନିଯୁକ୍ତି ପତ୍ର ଆସିଛି।

ବିନୋଦ ଡାକିଲା - ମାଳ, ଶୁଣ ? ସେ ରୋଷାଇ କରୁଥିଲା। ଝାଳନାଳ ହୋଇ ସ୍ୱାମୀଙ୍କ ପାଖରେ ପହଞ୍ଚିଲା।

- ନିଅ ମାଳ ? ଦେଖ, କଣ ଆସିଛି। ମୋତେ, ନଜଣାଇ, ତମେ ଚାକିରୀ ପାଇଁ ଦରଖାସ୍ତ କରିଥିଲ ମୋର କଣ ମାନ ସମ୍ମାନ ନାହିଁ। ତୁମେ, ଏ କଣ କରିବାକୁ ଯାଉଛ ? ବାପର ମାନ ଥିଲା।ସମ୍ମାନ ଥିଲା। ଭାଗ୍ୟ ଦୋଷରୁ ଆମେ ଦରିଦ୍ର ହୋଇଗଲୁ କର୍ପୂର ସିନା ଯାଇଛି। କନାତ, ଅଛି ?

ଯେଉଁଦିନ ତୁମ ସ୍ୱାମୀ ଅନ୍ଧ ହୋଇଯିବ, ବା ଜୀବନରେ ଥାଇ ମଧ୍ୟ, ନଥିଲା ପରି ଭାବିବ, ସେହିଦିନ ଘର ଭିତରୁ ଗୋଡ଼ କାଢ଼ିବ। ବିନୋଦ ଏତକ କହି ଦୁଃଖରେ ପିଣ୍ଡା ଉପରେ ବସିପଡ଼ିଲା। ତାର ଅତୀତ କଥା, ଗୋଟି ଗୋଟି ହୋଇ ମନେପଡ଼ିଯାଉଛି। କଣ ପାଇଁ ମାଳତୀ ତାକୁ ବିବାହ କରିଥିଲା। ବାପକୂଳରୁ ଆସି, କଣ ବା ଏଠି ସୁଖ ପାଇଲା।

- ହଁ ତୁମକୁ, ନ କହି ଚାକିରୀ ପାଇଁ ଦରଖାସ୍ତ କରିଥିଲି। ପାଠପଢ଼ିଛି। ଘରେ ବସି, ଲାଭ କଣ ? ଚାକିରୀ କରି ଦିପଇସା ଆଣିଲେ ସୁଖରେ ଚଳିବା। ଯଦି ତୁମ ମନକୁ ନ ପାଉଛି, ଚାକିରୀ ନ କରିବି, ଏଥିରେ ଦୁଃଖ କରିବାର କଣ ଅଛି ?

ବିନୋଦ କିଛି ନ କହି, ପିଣ୍ଡା ଉପରୁ ଉଠିଗଲା।

ବିନୋଦର ମା, ବୁଢ଼ୀ ହୋଇଗଲେଣି। ଦେହ ସବୁବେଳେ ଖରାପ। ବୁଢ଼ୀ ପୁଅକୁ ଦେଖିଲେ, ତାଙ୍କର ଜୀବନ କାହାଣୀ ମନେପଡ଼େ।

ବାପ ତାର ଯେତେବେଳେ ମୋତେ ବାହା କରିଥିଲେ, ବଡ଼ ଘର ଦେଖି। ବିନୋଦ ପିଲାଟିଏ ହୋଇଥାଏ। ତାର ବାପା, ପରବୁଦ୍ଧିରେ ପଡ଼ି, ଘରୁ ସବୁ କିଛି ବିକି, ଭାଙ୍ଗି, ମଦପାଣି ପିଇ ସତ୍ୟାନାଶ କଲେ।

ମୋର ବାପ ଦେଇଥିବା ଗହଣା ଦୁଇଖଣ୍ଡ, ମୁଁ, ଲୁଚାଇ ରଖିଥାଏ। ସେ, ଦିନେ ଆସି ରାତି ଅଧରେ ମୋତେ ମାଗିଲେ, ମୁଁ ନଦେବାରୁ ମୋତେ ବାଡ଼େଇଲେ। ମୁଁ ରାଗି, ଗହଣାତକ ତାଙ୍କ ଉପରକୁ ଫୋପାଡ଼ି ଦେଲି। ମନଦୁଃଖରେ ବାପ ଘରକୁ ଚାଲିଆସିଲି ପୁଅକୁ ନେଇ। ସେତିକି, ତାଙ୍କର, ମୋର ଦେଖା।

ବାପଘରେ ରହି, ପୁଅକୁ ମଣିଷ କଲି। ପୁଅଟି ଦୁଃଖ କଷ୍ଟରେ ମଣିଷ ହେଲା। ପ୍ରଭୁ ତାକୁ, ବଞ୍ଚେଇ ରଖନ୍ତୁ ? ଯାହା ହେଉ, ପ୍ରଭୁ ବୋହୁଟିଏ ଦେଇଛନ୍ତି ଲକ୍ଷ୍ମୀ ପ୍ରତିମା। ଏଡ଼େ ବଡ଼ ଘରେ ଜନ୍ମ ? ମାତ୍ର ଗରିବ ସାଙ୍ଗରେ ଗରିବ ପରି ଚଳୁଛି। ହେ ପ୍ରଭୁ ? ତା, କାଚ ବଜର କର। ତାଙ୍କ ଆଗରେ ମୋ, ଦିନ ଯାଉ। ବୁଢ଼ୀ ଏତକ ମନେ ମନେ, କହି ଆଖିରୁ ଲୁହ ଗଡ଼ାଇ ପକାନ୍ତି।

ବୁଢ଼ୀଙ୍କ ଦେହ ବହୁତ ଖରାପ । ସେ, ବିଛଣାରୁ ଉଠି ପାରୁନାହାନ୍ତି ।

ବିନୋଦ, ମନେ ମନେ ଭାବେ, କେତେ ପଇସା କେଉଁଠାରୁ ଆଣି ଔଷଧ ଦେବି । ସେ ଅଭାବରେ ବେସ୍ତ ହୋଇପଡ଼େ । ଅଭାବଟା ସ୍ତ୍ରୀକୁ ଜଣାଏ ନାହିଁ । ୟା ପାଖରୁ, ତା ପାଖରୁ ଧାର କରି ଚଳାଇ ନିଏ ।

ମା, ରୋଗରେ, ପଡ଼ି ପଡ଼ି ଇହଧାମ ତ୍ୟାଗ କଲେ । ମା ମଲା ଦିନରୁ ତାର ମନ, ସବୁବେଳେ ଦୁଃଖ ।

ମନେ ମନେ, ଭାବେ ପିଲାଦିନେ ମା, ମୋ ପାଇଁ କେତେ କଷ୍ଟ ସହି ନଥିଲା । ପିଲା ଦିନରୁ ବାପ କଣ ଜାଣିନଥିଲି । ମା, ଥିଲା ସେ ବି ଗଲା । ଆଉ ଦୁଇଟା ପେଟ, ପ୍ରଭୁ କୁଆଡ଼କୁ ନଉଛନ୍ତି ନିଅନ୍ତୁ ?...

ବିନୋଦର ଦେହ ଆଜି ବହୁତ ଖରାପ । ଭୀଷଣ ଜ୍ୱର, ଦେହ ହାତ, ବିନ୍ଧୁଛି । ସେ, ଆଜି ଅଫିସକୁ ଯାଇ ନାହିଁ । ମାଳତୀ ପାଖରେ ବସି - (ଆଉଁସି ଦଉଛି । ଭଗବାନଙ୍କୁ କାତର କଣ୍ଠରେ ଡାକୁଛି, ପ୍ରଭୁ, ମୋ ସ୍ୱାମୀକୁ ଭଲ କରି ଦିଅ ? ସେଇ ମୋର ଧନ, ସେଇ ମୋର ସମ୍ପତ୍ତି, ସେଇ ସମ୍ପତ୍ତିକୁ ଧରି ଦୁନିଆରେ ମୁଁ ଚାଲିଛି । ମୋର ସାହା ଭରସା କେହି ନାହିଁ ।

ରାତି ପାହି ସକାଳ ହେଲା । ମାଳତୀ ଦେଖିଲା, ବିନୋଦ ଦେହ ଯାକ ବସନ୍ତ । ଦେହକୁ ଚାହିଁ ହେଉ ନାହିଁ । ସେ, ସ୍ୱାମୀକୁ ତାର ଚାହିଁ କାନ୍ଦି ଉଠିଲା । ଏବଂ ମନେ ମନେ, ଅନୁତାପ କଲା ଆଜି, ବାପାଙ୍କର ଅଭିଶାପ ପଡ଼ିଛି । ଦଇବ ଆଜ୍ଜି, ମୋ ଦଦରା ନାଆକୁ ଭାଙ୍ଗିବାକୁ ବସିଛି ।

ତାର ଅଧିର ଭାବ ବିନୋଦ ସହିପାରୁ ନାହିଁ । ତାର ଆଜି, ରୋଗ ଶଯ୍ୟାରେ ପଡ଼ି ମନେ ପଡ଼ିଯାଉଛି । ମାଳ ସବୁ କିଛି ତ୍ୟାଗ କରି ତାକୁ ବାହା ହୋଇଥିଲା । କଣ ବା ସୁଖ ପାଇଲା ।

ମାଳତୀ କାନ୍ଦି ପକାଏ, ଭାଗବାନ ତାର ଭାଗ୍ୟ ପରୀକ୍ଷା କରୁଛନ୍ତି ।

ଭଗବାନଙ୍କ ଦୟାରୁ ବିନୋଦ ଦେହ ଭଲ ହେଲା । ମାତ୍ର ଆଖି ନଷ୍ଟ ହୋଇଗଲା । ଅଣ୍ଡାଳି ଅଣ୍ଡାଳି, ସେ ଚାଲେ ଏବଂ ବ୍ୟସ୍ତ ହୋଇ ପଡ଼େ

ସ୍ତ୍ରୀ ପାଇଁ । କଣ କରିବ, ସ୍ତ୍ରୀ ତାର କିପରି ଚଳିବ। ଦିନକୁ ଦିନ ଅଭାବ ମାଡ଼ି ଆସୁଛି।

ମାଧବ ବାବୁ। ଘରଟିକୁ ଅନାଥାଶ୍ରମ କରିଛନ୍ତି। ଝିଅ କଥା ମନେପଡୁଛି। ଝିଅକୁ ଟିକେ ଦେଖି ପାରିଲି ନାହିଁ? ଯାହା ଖାଲି ଶୁଣୁଛି, ଝିଅ ବହୁତ କଷ୍ଟରେ ଅଛି।

ତାଙ୍କର ସ୍ତ୍ରୀ କଥା ମନେପଡ଼ିଗଲା। ସେ, ଆଉ ଥୟ ଧରି ରହିପାରିଲେ ନାହିଁ। ମାଳକୁ ଆଣିବା ପାଇଁ ବାହାରିଲେ।

ମାଧବ ବାବୁ ଝିଅ ପାଖରେ ପହଞ୍ଚିଲେ। ମାଳତୀ ବାପାକୁ ଦେଖି କାନ୍ଦି ପକାଇଲା।

ସେ, ଝିଅର ଜୀର୍ଣ୍ଣଶୀର୍ଣ୍ଣ ଦେହ ଦେଖି ବ୍ୟାକୁଳ ହୋଇପଡ଼ିଲେ। କୋଳକୁ ତାଙ୍କର ଆଉଜାଇ ଆଣି କହିଲେ, ମା, ମୋର ସବୁ ଭୁଲ୍ ହୋଇଛି। ମୋର ଆତ୍ମାକୁ ବାଧିଲା, ତତେ ଘରୁ ତଡ଼ିଦେଲି। କିନ୍ତୁ ସମ୍ଭାଳି ପାରିଲି ନାହିଁ ତୋର ଦୁଃଖ।...

ତୋ ପାଇଁ ବିନୋଦ ପାଇଁ ମୁଁ ବିରାଟ ଅନାଥାଶ୍ରମ ଖୋଲିଛି। ଦୁଇଜଣ ବୁଝାବୁଝି କର।

ବାପା ତୋର ବୁଢ଼ା। ତାର ବା ସଂସାରରେ ଆଉ କେତେ ଦିନ ?

ତୋର ମା କଲ୍ୟାଣରୁ ଭଗବାନ ତୁମକୁ ସୁଖରେ ରଖନ୍ତୁ।



# ଶଙ୍ଖି ବିରାଡ଼ି

ମୁକୁନ୍ଦପୁର ଗାଁର ନୁଆଣିଆ ଚାଳ ଘର । ଉପରୁ ଅଧେ ଅଧେ ଛଣ ନାହିଁ । ବର୍ଷାପାଣିରେ ମାଟି କାନ୍ଥରୁ ଅଧେ ଅଧେ ଝଡ଼ି ପଡ଼ିଛି ।

ସତୁରୀ ବର୍ଷର ବୁଢ଼ୀ ଦାଣ୍ଡପିଣ୍ଡା କାନ୍ଥକୁ ଆଉଜି ବସି ଦୀର୍ଘ ନିଶ୍ୱାସ ଛାଡୁଛି । ତାର ଆଖିରୁ ବର୍ଷାପାଣି ପରି ଟପ୍ ଟପ୍ ହୋଇ ଲୁହ ନିଗିଡ଼ି ପଡୁଛି । ଶଙ୍ଖି ବୁଢ଼ୀକୁ ଚାହିଁଛି କରୁଣ ଦୃଷ୍ଟିରେ ।

ନାଁଟି, ତାର ଚେମା ମା । ସେ ଆଜି ସର୍ବହରା । ତାର ସ୍ୱାମୀ ନାହିଁକି, ପୁଅ ନାହିଁକି, ଝିଅ ନାହିଁ । ବୁଢ଼ୀ ଦିନ ଯାକ ଯାର, ତାର କାମ କରି ପେଟ ପାଟଣା ଚଳାଏ । ମାତ୍ର ସନ୍ଧ୍ୟା ହେଲେ ବୁଢ଼ୀ କୁଆଡ଼େ ଯାଏ ନାହିଁ । ସେହି ଭଙ୍ଗାକାନ୍ଥକୁ ଆଉଜି ବସି କାନ୍ଦେ ।

ତାର ଭଙ୍ଗା ଦଦରା କାନ୍ଥଟି ଭିତରେ ସିଏ ଏବଂ ଶଙ୍ଖି ବିଲେଇଟିକୁ ଧରି ରହେ । ବୁଢ଼ୀ ଯାହା ଖାଏ ତାହା ତାକୁ ଦିଏ । ବୁଢ଼ୀ କାନ୍ଦିଲେ, ଶଙ୍ଖି ତାପାଖରେ ଲାଙ୍ଗୁଡ ହଲାଇ ମ୍ୟାଉଁ ମ୍ୟାଉଁ ହୁଏ । ତାର ଦୁଃଖ ଚେମା ମା ବୁଝେ । ଚେମା ମା ବୁଢ଼ୀର ଦୁଃଖ ସିଏ ବୁଝେ ।

ଗାଁ ଯାକ ବୁଢ଼ୀକୁ କହନ୍ତି, ହଇଲୋ ବୁଢ଼ୀ ବିରାଡ଼ିଟାକୁ କାହିଁ ରଖିଛୁ ?

ବୁଢ଼ୀ କାନ୍ଦି ପକାଏ । କହେ, ବାବୁ ? ସେ, ମୋ ଶଙ୍ଖାଳି, ତାକୁ ଛାଡ଼ି ମୁଁ ରହିପାରିବି ?

ଗାଁ ଯାକ ବୁଢ଼ୀକଥାକୁ ହସି ଉଡ଼େଇ ଦିଅନ୍ତି । ମାତ୍ର ବୁଢ଼ୀର କାହା କଥାକୁ ଖାତିରି ନଥାଏ ।

ବୁଢ଼ୀ ଶଙ୍ଖିକି ଦେଖିଲେ, ତାର, ସ୍ୱାମୀ ପୁଅ କଥା ମନେପଡ଼େ ।

ଚେମା ବାପ ଶଙ୍ଖିକି ବହୁତ ଭଲ ପାଆନ୍ତି । ସେ ଖାଇଲାବେଳେ ଶଙ୍ଖିକି ଖାଇବାକୁ ନ ଦେଲେ ଖାଆନ୍ତି ନାହିଁ ।

ଆଜକୁ ପାଞ୍ଚବର୍ଷ ହେଲା, ଚେମା ବାପ ସେ ପାରିକୁ ଗଲେ। ଭେଣ୍ଡା ପୁଅ ବାୟା ବାତୁଳା ହୋଇ ଘରଛାଡ଼ି ଗଲା। ମଲା, କି ବଞ୍ଚିଲା ତା ବି ଜାଣିପାରିଲି ନାହିଁ। ଆଉ ବା ମୋର କିଏ ଅଛି। ଚେମା ବାପ ଯାହାକୁ ଦେଇଯାଇଛି ତାକୁ ଚାହିଁ ବଞ୍ଚିଛି। ସେଇ ମୋର ସବୁ।

ଶଙ୍ଖିଟି ଦେଖିବାକୁ କଇଁଫୁଲ ପରି ଧଳା। ମୋଟାମୋଟି ମଣିଷ ପରି ତାର ସ୍ୱଭାବ। ତାକୁ ଦେଖିଲେ ସମସ୍ତେ ଖୁସି ହୁଅନ୍ତି। ଗାଁ ପିଲାଯାକ ଶଙ୍ଖି, ଶଙ୍ଖି ବୋଲି ଡାକିଲେ ସେ ରାଗିଯାଏ। ଗେହ୍ଲା କରି ଡାକିଲେ, ଶଙ୍ଖି କୋଡ଼ ଭିତରେ ପଶେ।

ବୁଢ଼ୀ ସକାଳୁ କାମ କରିଗଲେ ଶଙ୍ଖି ଦୁଆର ମୁହଁରେ ଜଗି ବସିଥାଏ।

ବୁଢ଼ୀ ସନ୍ଧ୍ୟାବେଳେ ଘରକୁ ଆସିଲେ, ଶଙ୍ଖି ପଦାକୁ ଯାଏ ବୁଲିବା ପାଇଁ। ସେ ବୁଲି, ବୁଲି ରାତି ପହରକୁ ଘରେ ପହଞ୍ଚେ।

ବୁଢ଼ୀ ହସି, ହସି ଗଢ଼େ। ପାଖରେ ବସାଇ କହେ, ହଇଲୋ ଶଙ୍ଖି ତୁ, କୁଆଡ଼େ ଯାଇଥିଲୁ ? ଶଙ୍ଖି ବୁଢ଼ୀର କୋଡ଼ ଭିତରେ ପଶିଯାଏ।

ଗାଁ ଗଣ୍ଡା ସାଇପଡ଼ିଶାଙ୍କ ଘରେ ପଶି ଶଙ୍ଖି ହଇରାଣ କରେ। କାହାଘରୁ ଦୁଧ ଖାଏ ତ, କାହା ହାଣ୍ଡିଶାଳ ଘରେ ପଶି ତରକାରି ପତ୍ରରେ ମୁହଁ ମାରେ।

ରାତି ପାହିଲେ, ବୁଢ଼ୀ ଆଗରେ ସମସ୍ତଙ୍କର ଫେରାଦ। ଚେମା ମା, ବେସ୍ତ ହୋଇପଡ଼େ। କାହାକୁ କିଛି କହେ ନାହିଁ। ସ୍ୱାମୀକୁ, ପୁଅକୁ ମନେପକାଇ ଲୁହଗଡ଼ାଏ। ସେ, ମନକୁ ମନଭାବେ, ଚେମା ଯଦିଥାନ୍ତା, ଏ ଗାଁ ଲୋକେ ମୋ ଉପରେ ଏମିତି ନାଲି ଆଖି ଦେଖାନ୍ତେ ? ଛାଡ଼, ମୋର ଆଉ କିଏ ଅଛି, ଯିଏ ଯାହା କହୁଛି କହୁ ? ଚେମା ବାପ ଯାହାକୁ ଛାଡ଼ି ଯାଇଛି, ତା, ଆଗରେ ମୋ ଦିନ ଯାଉ ?

ଚେମା ମା, ରାତିରେ ଶୋଇଲେ ଶଙ୍ଖି ତା, ମୁଣ୍ଡ ଉପରକୁ ଶୋଇଥାଏ। ସେ, ମନକୁ, ମନ ଗପେ, ହେ, ପ୍ରଭୁ କେଉଁଦିନ ମୋତେ ଚେମା ବାପ ପାଖକୁ ନବୁ ? କେତେ ପରମାୟୁ ମୋତେ ଦେଇଛୁ ?

କରି କରୁଥାଉ ତୁହି । ତୋ ବିନୁ ଅନ୍ୟଗତି ନାହିଁ ।

ସବୁ ତୁ, କରୁଛୁ । ସବୁ, ତୋ, ହାତରେ । ମୋତେ କାହିଁକି ବଞ୍ଚାଉଛୁ, ମୁଁ ଜାଣି ପାରୁନାହିଁ ? ମୁଁ, ମଲେ କିଏ, ବା ମୋ ପାଇଁ କାନ୍ଦିବ । ଏକା ଶଙ୍ଖିଟିର ଯିବ । ଏତକ କହିଲା ବେଳକୁ ଶଙ୍ଖି ଭାଲୁ ପରି ଉଠି ବୁଢ଼ୀର କୋଡ଼ ଭିତରେ ପଶେ ।

ବୁଢ଼ୀ ତାକୁ ଆଉଁସି କହେ ଲୋ, ଶଙ୍ଖି ମୁଁ ଯେଉଁଦିନ ମରିବି ତୁ, କଣ କରିବୁ ? ଶଙ୍ଖି ମ୍ୟାଉଁ ମ୍ୟାଉଁ ହୁଏ । ବୁଢ଼ୀର ମାତୃହୃଦୟ ଅସ୍ଥିର ହୋଇ ଉଠେ ।

ଆଜି ବୁଢ଼ୀର ଦେହ ବହୁତ ଖରାପ ! ଘରୁ ଉଠୁ ନାହିଁ । କି କାହାଘରକୁ କାମ କରିବାକୁ ଯାଉ ନାହିଁ । ଅଖିଆ, ଅପିଆ ପଡ଼ିଛି । ଶଙ୍ଖି ମଧ୍ୟ ବୁଢ଼ୀ ପାଖ ଛାଡ଼ି କୁଆଡ଼କୁ ଯାଉନାହିଁ । ପାଖରେ ବସି ମ୍ୟାଉଁ ମ୍ୟାଉଁ ହଉଛି ।

ରାତି ପାହିଲେ, କାର୍ତ୍ତିକ ପୂର୍ଣ୍ଣିମା । ଗାଁରୁ ପିଲାଠାରୁ ମାଇପେ ପର୍ଯ୍ୟନ୍ତ ପୋଖରି ତୁଠରେ । ସମସ୍ତଙ୍କ ମୁହଁରେ ଗୋଟିଏ କଥା, ଚେମା ମା, ବୁଢ଼ୀ ଆଜି, ଗାଧୋଇବାକୁ ଆସି ନାହିଁ । କି, କାହା ଘରକୁ କାମ କରିବାକୁ କାଲିଠାରୁ ଯାଇନାହିଁ ।

ସମସ୍ତେ ଗାଧୁଆ, ପାଧୁଆ ସାରି ଚେମା ମା ବୁଢ଼ୀ ଘରକୁ ଗଲେ ।

ବୁଢ଼ୀକୁ ଦେଖି ସମସ୍ତେ ଚମକି ପଡ଼ିଲେ । ବୁଢ଼ୀ ପାଟିରୁ ଫେଣ ବାହାରୁଛି । ସିଏ ଆଉ ନାହିଁ । ଶଙ୍ଖିଟି ତା ପାଖରେ ମ୍ୟାଉଁ ମ୍ୟାଉଁ ହୋଇ ଏପାଖ ସେପାଖ ହଉଛି ।

ଗାଁ ଲୋକ ସବୁ ବୁଢ଼ୀକୁ ଦାହ କରିବାକୁ ନେଲେ । ଶଙ୍ଖି ତାଙ୍କ ସାଙ୍ଗରେ ଗଲା । ଦାହ କରି ସାରିଲା ପରେ ସମସ୍ତେ ଦେଖିଲେ ଶଙ୍ଖି ଆଉ ସେଠାରେ ନାହିଁ ।

ସେହି ଦିନଠାରୁ ସେ ଗାଁରେ ଶଙ୍ଖକି ଆଉ କେହି ଦେଖି ନାହାନ୍ତି ।



# ସମାଜର ଅବିଚାର

କାର୍ତ୍ତିକ ମାସ ଝଡ଼ିପବନ ବର୍ଷାରେ ତାର ପାଦଦୁଇଟା ଥରି ଉଠୁଛି । ଭୋକ ଉପାସରେ ପେଟଟା ଘାଣ୍ଟିଚକଟି ପକାଉଛି ।

ତଥାପି ମକରା ଏ ଗାଁ, ସେ ଗାଁ ଚାଲିଛି ।

ତାର ଦେହରେ ହାଡ଼ ଦୁଇଖଣ୍ଡି । ମୁଣ୍ଡରେ ବାଳଗୁଡ଼ାକ ଝୋଟପରି ପାଚି ଫୁର୍ ଫୁର୍ ହୋଇଉଡୁଛି । ସତେକି କେଉଁ ଦିନଠାରୁ ମୁଣ୍ଡରେ ତେଲ ବାକି ନାହିଁ । କେବଳ ଦେହରେ ଶୀତ କାକରକୁ ସାତସିଆଁ ଚଦରଟି ରହିଛି ।

ସେ ଯେତେବେଳେ ଗାଁ ଦାଣ୍ଡରେ ଠିଆ ହୋଇପଡ଼େ ପିଲାଏ ତା ଉପରକୁ ଢେଲା ଫୋପାଡ଼ି ପାଟିକରି ଉଠନ୍ତି, ଆରେ? ପାଗଳାକୁ ଏ ଗାଁରୁ ତଡ଼ିଦିଅ ? ସେ, ହସି ହସି ଗଡ଼ିଯାଏ ପୁଣି ତାର ଆଖିବାଟେ ଲୁହ ଧାର, ଧାର ହୋଇ ଗଡ଼ିଗଡ଼େ । ସେ, ଚାରିଆଡ଼କୁ ଚାହେଁ କାହାର ଅନ୍ୱେଷଣରେ ।

ତାର ଝଡ଼ିବର୍ଷା ପାଣି ପବନକୁ ଖାତିରି ନଥାଏ । ପାଦ ଦୁଇଟା ଆଗକୁ, ଆଗକୁ ବଢ଼ାଏ ଆଉ ଗାଁକୁ ଏ ଦୁଆରେ ସେ ଦୁଆରେ ଡାକପକାଏ, ମା, ଭୋକ ଶୋଷରେ ତଣ୍ଟି ଶୁଖି ଯାଉଛି ଗଣ୍ଡେ ଖାଇବାକୁ ମିଳୁ ? ତା ପରିବର୍ତ୍ତେ ପାଏ ନିର୍ଯ୍ୟାତନା ଏବଂ ଲାଞ୍ଛନା ।

ମକରାର ଶୀତରେ ଦେହଟା କୋହ୍ଲ ମାରି ଉଠୁଛି । ଗୋଡ଼ ଦୁଇଟା ଅଟକି ପଡୁଛି । ଶୋଷରେ ତଣ୍ଟି ଶୁଖି ଅଠା । ସେ ପୋଖରିକୁ ଯାଇ ପେଟେ ପାଣି ପିଇଲା ପାଖରେ ଥିବା ବରଗଛ ମୂଳେ ମୁଣ୍ଡରେ ହାତ ଦେଇ ଦୀର୍ଘ ନିଶ୍ୱାସ ମାରି ବସିପଡ଼ିଲା ।

ତାର ମନେ ପଡ଼ିଗଲା ପୁରୁଣାଦିନର ଅଲିଭା କଥା ।

ହିରା ? ..... ଯାହାକୁ ମୁଁ ଜୀବନ ଦେଇ ଭଲ ପାଇଥିଲି ସେ, ଆଜି ମୋତେ ଧୋକ୍କାଦେଇ ଚାଲିଗଲା ପରବନ୍ଧିରେ । ମନ ତାର ହୋଇପଡ଼ିଲା ଉହକ ବିକଳ । ଏବଂ ପିଲାଦିନର ଅଙ୍ଗେଲିଭାଇବା କଥା ଆଖି ଆଗରେ

ଭାସିଉଠିଲା । ବାପ ତାର ଯେତେବେଳେ ମଦନିଶାରେ ଟଳି ଟଳି ରାତିଅଧରେ ଘରେ ପହଞ୍ଚି ମାକୁ ଛେଚି ପକାଏ । ତାର ଦେହମୁଣ୍ଡରୁ ରକ୍ତ ବୋହିପଡ଼େ । ସେ, ସମ୍ଭାଳି ନପାରି କାନ୍ଦି କାନ୍ଦି ମାକୁ କୁଣ୍ଢାଇ ପକାଏ ।

ଶେଷରେ ମା, ତାର ସହି ନ ପାରି ବର୍ଷର ପୁଅକୁ ଛାଡ଼ି ଦେଖିଲା କାମ କଲା ।

... ଗାଁଠାରୁ ଭୂଇଁ ପର୍ଯ୍ୟନ୍ତ ସମସ୍ତେ କହିଲେ ମକରା ମା, ମଲା ନାହିଁ ଯେ, ଶକୁରା ଜାଲାରୁ ତରିଗଲା.. ବନ୍ଧୁବାନ୍ଧବ କହିଲେ, ମଲା ? ସିଏ ସିନା ବାଟକାଟିଲା, ଛେଉଣ୍ଡ ପିଲାଟିକୁ କିଏ ଚାହିଁବ ?

ମକରା ମା ମଲା ଦିନରୁ ସୁକୁରା ବେଶୀ ବେଶୀ ନିଶାପାଣି ପିଇବାକୁ ଲାଗିଲା । ଘରେ ପଶିବା ନାଁ ଗନ୍ଧ ଧରିଲା ନାହିଁ । ପୁଅ ଖାଇଲା ନ ଖାଇଲା ତାର ଚିନ୍ତା ନଥାଏ ।

ମକରା କିଛି ଉପାୟ ନଦେଖି ବାଧ୍ୟ ହୋଇ ରାତିଅଧରେ ଘରୁ ଗୋଡ଼ କାଢ଼ିଲା ପଦାକୁ । ରାତି ପାହି କୁଆ ରାବିଲା ବେଳକୁ ସେ, ଆସି କନ୍ଦରପୁର ବଜାରରେ ଯେଉଁଠି ଶହ ଶହ ଲୋକ ଖାଇ କରିଯାଉଛନ୍ତି । ତାର ପାଦଦୁଇଟା ସେ ହୋଟେଲ୍ ଦୁଆର ମୁହଁରେ ଅଟକି ପଡ଼ିଲା । ସେ ଦେଖିଲା ଚଉଦ ବର୍ଷର ଝିଅ । ରଙ୍ଗଟି ତାର କଳା । ମୁହଁଟି ଡଉଲ ଡାଉଲ, ବାଳଗୁଡ଼ିକ କୁଞ୍ଚୁକୁଞ୍ଚିଆ । ହଳଦିଆ ରଙ୍ଗର ଗାମୁଛା ଖଣ୍ଡିଏ ପିନ୍ଧି ବାସନ ମାଜୁଛି ।

ମକରା ଭୋକ ସହି ନ ପାରି ଅତି କାତର କଣ୍ଠରେ ଡାକିଲା ବାବୁ ଗଣ୍ଡେ ଖାଇବାକୁ ମିଳୁ ?

ହିରା ତା, ଆଡ଼କୁ ମୁହଁ ମୋଡ଼ି ଦେଇ କହିଲା, ତତେ ସକାଳୁ କିଏ ଖାଇବାକୁ ଦବ ?... ସେ, ଦେହରୁ ଛିଣ୍ଡା ଦରବାଟି କାଢ଼ି ପେଟ ଦେଖାଇ ଦେଇ କହିଲା, ତିନିଦିନ ହେଲା ପେଟକୁ ଦାନା ନାହିଁ ଲୋ, ପେଟ ଭିତରଟା ରାମ୍ପୁଡ଼ି ପକାଉଛି । ଆଖି ବାଟେ ଜୁଳୁଜୁଳିଆ ବାହାରି ପଡୁଛି ।

ହିରା ବାସନ ମାଜିବ କଣ ? ମକରା ଆଡ଼କୁ ଚାହିଁ ରହିଲା ।

ହୋଟେଲ ମାଲିକ ପଦାକୁ ଆସି ପଚାରିଲେ ଆରେ, ପିଲା କାହିଁ ପାଟି କରୁଛୁ ? ଆଜ୍ଞା କଣ ଗଣ୍ଡେ ଖାଇବାକୁ ମିଳୁ ?

- କିରେ, ତୋ ନାଁ କଣ ?

- ମୋ ନାଁ, ମକରା ।

- ତୁ ହୋଟେଲରେ ବଢ଼ାବଢ଼ି କରିପାରିବୁ ?

- ହଁ ବାବୁ, ସବୁ କରିବି, ଦୟା କର ବାବୁ ।

.. ସେହିଦିନଠାରୁ ମକରା ହୋଟେଲେରେ ରହି ବଢ଼ାବଢ଼ି କଲା ।

ଆଜି ହିରାର ଦେହ ଭଲ ନାହିଁ । ଦେହଟା ତାତିରେ ଫୁଟୁଛି । ସେ, ଛିଣ୍ଡା ମସିଣାଟି ଉପରେ ଶୋଇଛି ଜାକି ଜୁକି ହୋଇ ।

ମକରା ହୋଟେଲ କାମସାରି ହିରା ପାଇଁ କ୍ଷୀର ଟିକେ ଆଣି ତା ପାଖରେ ବସି ଡାକିଲା, ଭଉଣୀ ତୋ ନାଁ କଣ ?

- ମୋ ନାଁ ହିରା ।

- ଉଠୁ କ୍ଷୀର ଟିକେ ପିଇଦେ ?

ହିରା ଅତିକଷ୍ଟରେ ଉଠି କ୍ଷୀର ଟିକେ ପିଇଲା ।

- ହଇଲୋ, ଭଉଣୀ ତୋ ଘର କେଉଁଠି ?

- ମୋର ଘର ନାହିଁ କି, କେହି ନାହାନ୍ତି ?

ମକରା ଚମକି ପଡ଼ି କହିଲା ତୋର କଣ ବାପ ମା ନାହାନ୍ତି ?

ହିରା ଆଖିରୁ ଲୁହ ଗଡ଼ି ପଡ଼ିଲା ତା ହାତ ଥରି ଉଠିଲା । ସେ, କହିଲା ମା ମୋତେ ବହୁତ ଦିନରୁ ଛାଡ଼ି ଚାଲିଯାଇଛି । ବାପ ନିଶାପାଣି ପିଇ ବୁଲୁଥାଏ

ମକରା ନିଜକୁ ସମ୍ଭାଳି ନପାରି କଇଁ କଇଁ ହୋଇ କାନ୍ଦି ପକାଇଲା । ସେହିଦିନଠାରୁ ଉଭୟେ ଉଭୟଙ୍କୁ କାମଦାମରେ ସାହାଯ୍ୟ କରନ୍ତି ।

ଆଜି ଜାଗର ଯାତ୍ରା କନ୍ଦରପୁର ମହାଦେବଙ୍କ ପାଖରେ । ମକରା ହୋଟେଲ୍ କାମ ସନ୍ଧ୍ୟାବେଳକୁ ସାରି ଦେଇ ହିରାକୁ ଡାକିଲା ଯିବାକୁ ମହାଦେବଙ୍କ ପାଖକୁ ।

ହିରା ମୁହଁ ଶୁଖାଇ କହିଲା - ମୁଁ ତୋ ସାଙ୍ଗରେ ଗଲେ ବାବୁ ରାଗିବ ।

- ତୁ, ଯିବୁ ନାହିଁ ?

- କେମିତି ଯିବି । ସେ ତା ପାଖରୁ ଆଠଅଣା ପଇସା ଆଣି ମକରା ହାତକୁ ବଢ଼ାଇ ଦେଇ କହିଲା - ମୋ ପାଇଁ ରିବନ୍ ଆଣିବୁ ।

ମକରା ହସି କରି ହିରା ଗାଲରେ ଆସ୍ତେ ଚାପୁଡ଼ା ଦେଇ କହିଲା ମୁଁ ରିବନ୍ ଆଣେ ପଇସା ନେବି ।

ମକରା ଗଲା ଜାତ ଦେଖିବାକୁ । ସେ ବାଟଯାକ ଭାବି ଭାବି ଚାଲିଛି ଆଗ ତ କଥା । ହିରାର ସ୍ନେହଶ୍ରଦ୍ଧାରେ ସେ, ଆତ୍ମହରା ହୋଇ ସବୁ ଦୁଃଖ ଭୁଲିଯାଉଛି ।

ସେ ଠାକୁରଙ୍କ ପାଖରେ ମୁଣ୍ଡିଆଟିଏ ମାରି କହିଲା - ପ୍ରଭୁ ମୋତେ ହିରାକୁ ଦିଅ । ତାର ମନ ଚଞ୍ଚଳ ହୋଇ ଉଠିଲା ଯିବାକୁ ଘରକୁ । ମନେ ପଡ଼ିଗଲା ହିରା କହିବା କଥା । ସେ, ତରତର କରି ରିବନ୍ କୁଙ୍କୁମ କିଣି ହୋଟେଲ୍ ପାଖରେ ପହଞ୍ଚିଲାବେଳକୁ ରାତି ଦୁଇଟା ।

...ହିରା ତାକୁ, ଅପେକ୍ଷା କରି ବସିଛି । ମକରା ହିରା ପାଖରେ ବସିଲା । କିଛି ସମୟ ପରେ ସେ, ପଚାରିଲା, ହିରା ? ବହୁତ ଦିନରୁ ତତେ ଗୋଟିଏ କଥା ପଚାରିବି ବୋଲି ଭାବୁଛି ।

- ଏମିତି କି କଥାଯେ ପଚାରି ପାରୁନୁ ।

- ମକରା ହସିଦେଇ କହିଲା, ସତ କହିବୁ ତୁ ମୋତେ ଭଲ ପାଉ ?

ହିରା ତଳକୁ ମୁହଁ କରି ମୁରୁକେଇ ହସି କହିଲା ତତେ ମୁଁ ଜୀବନଠାରୁ ଆହୁରି ଭଲ ପାଏ ।

- ମୋର ଭାରି ଇଛା ତତେ ବିଭାହେବାକୁ ?

- ମୁଁ କଣ ମନାକରୁଛି ? ହଉ। ଜାତରାରୁ କଣ ଆଣିଛୁ ମୋ ପାଇଁ ଦେଖା ।

ମକରା ହିରା ହାତକୁ ବଢ଼ାଇ ଦେଲା ରିବନ୍ କୁଙ୍କୁମ। ହିରାର ହାତ ଥରି ଉଠିଲା ଅପୂର୍ବ ଶିହରଣରେ। ମକରା, ହିରା ଦୁଃଖସୁଖ ହଉ ହଉ ରାତିପାହିଲା ।

ପ୍ରତିଦିନ ରାତିରେ ଦୁଇଜଣ ଯାକ ହୋଟେଲ୍ କାମ ସାରି ରାତି ଦୁଇଘଡ଼ି ପର୍ଯ୍ୟନ୍ତ ଗପ, ସପ ହୋଇ ଶୋଇବାକୁ ଯାନ୍ତି। ଉଭୟଙ୍କ ଭିତରେ ସ୍ନେହ ମମତା ଘନିଷ୍ଠ ହୋଇଉଠିଲା ।

ହିରା ଦିନେ ଶୋଉ ଶୋଉ ଦିନ ଘଡ଼ିଏ ପର୍ଯ୍ୟନ୍ତ ଶୋଇପଡ଼ିଲା । ମକରା ସକାଳୁ ତର ତର କରି ବାସନ ମାଜିଲା ବେଳକୁ ହୋଟେଲ୍ ବାବୁର ରାଗ ଦେଖିବ କଣ ? (ପକା ଉପରକୁ) ତାର ପାଟିରେ ହୋଟେଲ୍ କମ୍ପୁଥାଏ ।

ହିରାର ନିଦ ଚାଉଁକିନା ଭାଙ୍ଗିଗଲା । ସେ, ଧଡ଼ପଡ଼ କରି ଉଠିଆସିଲା ବାସନ ମାଜିବାକୁ ।

ମକରା ହିରାକୁ ଦେଖି ବାସନ ମଜା ପାଖରୁ ଉଠି ଚାଲିଗଲା ।

ହୋଟେଲ୍ ବାବୁ ରାଗର ହିରାକୁ ଡାକି କହିଲା - ତୁମେ ଦୁଇଜଣ ଯେଉଁ ନାଟ ଲଗାଇଛ, ତତେ ଆଗବିଦା କରିବି?

ହିରାର ଦେହହାତ ଥରିଉଠିଲା। ମୁହଁ ଶୁଖି କଳାକାଠ। ସେ କାମସାରି ଗୋଟିଏ ଜାଗାରେ ବସି କାନ୍ଦିବାକୁ ଲାଗିଲା ।

ସେଦିନ ରାତିରେ ମକରା ହିରାକୁ ବହୁତ ବୁଝାଇ କହିଲା, ମୁଁ ଯେପର୍ଯ୍ୟନ୍ତ ଅଛି ନିଶ୍ଚୟ ତୋତେ ସାହାଯ୍ୟ କରିବି, ତୁ କାନ୍ଦନା । ହିରା ଆଖିରୁ ଲୁହ ପୋଛି କହିଲା, ମୋତେ ବାବୁ କାଳେ ବିକିଦବ ଭାରି ଡର ଲାଗୁଛି ।

ମକରା ହିରାର ପିଠି ଆଉଁସି ହସି ଦେଇ କହିଲା - ମୁଁ ଅଛି ତତେ କିଏ ବିକିଦବ ?

କିଛିଦିନ ପରେ ମକରା ଦେଖିଲା ହିରା ନାହିଁ ! ସେଦିନ ରାତିରେ ସେ, କାହାକୁ କିଛି ନକହି କେତେ ଖୋଜିଲା । ସମସ୍ତଙ୍କୁ ପଚାରିଲା କିନ୍ତୁ ତାର ଜବାବ୍ ସେ ପାଇଲା ନାହିଁ । ଚାଲିଆସିଲା କନ୍ଦରପୁର ମଝିରାସ୍ତାକୁ । ସେ ବାଟେ ଯିଏ ଯାଏ - ସେ ପଚାରେ ବାବୁ ହିରାକୁ ଦେଖିଛ ? କିନ୍ତୁ ତାକୁ ସମସ୍ତେ କିଛି ନକହି ମୁହଁ ବୁଲାଇ ଚାଲି ଯାଆନ୍ତି ।

ମକରାର ଛାତି ଭିତର ଥରି ଉଠେ । ହିରାର ସରଳ ମୁହଁଟି ତା ଆଖି ଆଗରେ ନାଚିଉଠେ । ସଂସାରଟା ତାକୁ ଭଲ ଲାଗେ ନାହିଁ ।

ମକରା ପୁଣି ଆଗକୁ ପାଦ ବଢ଼ାଏ ଏବଂ ଏ ଗାଁରେ, ସେ ଗାଁରେ ପଚାରେ, ମାଉସୀ ହିରାକୁ ଦେଖିଛୁ ?

ହିରା କାହିଁ ?

ଗାଁ ମାଇପେ ତାକୁ ମୁହଁ ମୋଡ଼ିଦେଇ କହନ୍ତି - ହିରା, ହିରା କାହିଁକି ହଉଛୁ ? ହିରା ଆଉ ଅଛି ଯେ, ତୁ ପାଇବୁ । ସେ, ହୋଟେଲ୍ ମାଲିକ କାହାକୁ ବିକିଦବଣି । ମକରା ପୁଣି ପଛକୁ ଫେରି ପଚାରେ, ମାଉସୀ କଣ କହିଲୁ ? ସେ ମନେ ମନେ ଗୁଣୁଗୁଣୁ ହୋଇ କଣ ଯେପରି କହିଚାଲେ, କେହି ତା କଥା ଆଉ ବୁଝିପାରନ୍ତି ନାହିଁ ।

ମକରା ଫେରିଆସେ ଆଗକୁ - ଯେଉଁଠି ଜନଗହଳି । ସେ ଚାରିଆଡ଼େକୁ ବଲ ବଲ କରି ଚାହେଁ । ସମାଜ ପ୍ରତି ତାର ଆସେ ବିତୃଷ୍ଣା ।

ସେ ବାଟେ ଯିଏ ଯାଏ, ସେ କାନ୍ଦ, କାନ୍ଦ ହୋଇ ତା ପାଖକୁ ଦୌଡ଼ିଯାଇ ପଚାରେ ବାବୁ, ସତ କୁହ ଆଉ କଣ ହିରା ଆସିବ ନାହିଁ । କାହାରି ଠାରୁ ଉତ୍ତର ପାଏ ନାହିଁ ।

ସେହିଦିନଠାରୁ ମକରା, ଚାରି ଆଡ଼େ ପାଗଳଙ୍କ ପରି ବୁଲୁଥାଏ - କାହା ଅନ୍ୱେଷଣରେ !!



# ଅକୁହା କଥା

ମାଟି କାନ୍ଥ - ଚାଳଘର । ବର୍ଷାହେଲେ ଘର ଭିତରୁ ଟୁପୁର, ଟୁପୁରୁ ପାଣି ପଡୁଛି । ସତେକି, କୋଉଦିନଠାରୁ ଘରଛପର ହୋଇନାହିଁ । ରାମନାରାୟଣଙ୍କର ପୂର୍ବପୁରୁଷର ଘର, ସେତିକି ମାତ୍ର ତାଙ୍କର ସମ୍ବଳ ।

ଜମିବାଡ଼ି ତାଙ୍କର କିଛି ନଥିଲା । ସେ, ଜମିଦାର ଘରେ ଗୁମାସ୍ତା କାମକରି ପନ୍ଦରଟି ଟଙ୍କା ପାଆନ୍ତି, ସେଥିରେ ଚାରିପ୍ରାଣୀ ଦୁଃଖସୁଖରେ ଚଳନ୍ତି । କାହାପାଖରେ ହାତପତାନ୍ତି ନାହିଁ । ଅଭାବ ହେଲେ ମଧ୍ୟ କାହାକୁ କହନ୍ତି ନାହିଁ ।

ରାମନାରାୟଣ ପ୍ରତିଦିନ ସନ୍ଧ୍ୟା ହେଲେ ଦାଣ୍ଡପିଣ୍ଡାରେ ବସି ଭାଗବତ ବୋଲନ୍ତି । ମା, ତାଙ୍କ ପାଖରେ ବସି ଶୁଣନ୍ତି ।

ଦିନେ ରାମନାରାୟଣ ପିଣ୍ଡାରେ ବସି ଭାଗବତ ପଢୁଛନ୍ତି । ଦଶବର୍ଷର ଝିଅ ସର, ଦୌଡ଼ି ଆସି ବାପାଙ୍କ ପାଖରେ ବସିପଡ଼ିଲା । ବାପା, ମୁଁ ପାଠପଢ଼ିବି - କଣ କହୁଛ ?

ଝିଅର କଥା ଶୁଣି ରାମନାରାୟଣ ହସି ପକାଇ କହିଲେ - ହଁରେ, ମା ତୁ ପଢ଼ିବୁ । ଏତକ କହି ସେ, ମାଙ୍କ ମୁହଁକୁ ଚାହିଁଲେ ।

ଭାତବାଢ଼ି କମଳା ସରକୁ କହିଲେ ବାପାଙ୍କୁ ଡାକେ ଖାଇବାକୁ । ମା ପୁଅ ଉଠିକରି ଗଲେ ।

ରାମନାରାୟଣ ଖାଇ ବସିଛନ୍ତି, ମା, ତାଙ୍କ ପାଖରେ ବସିଛନ୍ତି । କମଳା, ହାଣ୍ଡିଶାଳ କବାଟ ପାଖରେ ଠିଆ ହୋଇଛନ୍ତି ।

ବୁଢ଼ୀ କହିଲେ ହଇରେ ପୁଅ, ସର ତୋ ସାଙ୍ଗରେ ସବୁବେଳେ [illegible] ପାଠପଢ଼ିବ ।

[illegible] ଝିଅଟିଏତ ହେଲାଣି - ରନ୍ଧାବଢ଼ା ଶିଖିବ । ଚିତା, ମୁରୁଜ [illegible] ?

ରାମନାରାୟଣ ମାଙ୍କ କଥା ସବୁ ଶୁଣି ଚୁପ୍ ହୋଇ ରହିଲେ। କଣ ବା କହିବେ, ମାତ ଆଗକାଳିକା ମଣିଷ, ଆଜିକାଲି କଥା ଭଲଲାଗିବ କିପରି?

ସର, ଦେଖିବାକୁ ଶ୍ୟାମଳ ବର୍ଣ୍ଣ ମୁହଁଟି ତାର ଗୋଲ। ହାତ, ଗୋଡ଼, ଦେହ ବଳି ଦେଲାପରି। ତାର ମୁହଁଟିକୁ ଯିଏ ଦେଖେ ଚାହିଁ ରହିଥାଏ। ସର, ଗରିବ ଘର ଝିଅ ହେଲେବି, ଖତ ଗଦାରେ ପଦ୍ମଫୁଲ।

ଜମିଦାରଙ୍କ ପୁଅ କୁନାବାବୁର ସବୁବେଳେ ସର ଉପରେ ଆଖି। ସର ଯେତେବେଳେ ସ୍କୁଲକୁ ଯାଏ। କୁନାବାବୁ ମଝିବାଟରେ ଠିଆ ହୋଇ ତାର, ଆସିବାବାଟକୁ ଚାହିଁ ରହେ।

ଆଜି ସ୍କୁଲକୁ ଇନ୍‌ସ୍‌ପେକ୍ଟର ବାବୁ ଆସିବେ। ପିଲା ଯାକ ସମସ୍ତେ ଖାଇ ପିଇ ଗଲେଣି। ସର ଗାଧୋଇ ପଡ଼ି, ଭଲ ଶାଢ଼ୀ ଖଣ୍ଡେ ପିନ୍ଧି ସ୍କୁଲକୁ ଗଲା।

ଇନସ୍‌ପେକ୍ଟର ସବୁପିଲାଙ୍କୁ ପ୍ରଶ୍ନ ପଚାରିଲେ। କେହି ପ୍ରଶ୍ନର ଉତ୍ତର ଦେଇ ପାରିଲେ ନାହିଁ।

ସର, ସବୁପ୍ରଶ୍ନର ଉତ୍ତର ଦେଲା। ଇନସ୍‌ପେକ୍ଟର ବାବୁ ସର ଉପରେ ଖୁସି ହୋଇ ପଚାରିଲେ, ଝିଅ, ତୁମର ନାଁ କଣ ?

ମୋ ନାଁ, ସରସ୍ୱତୀ ।

ବାଃ ଭଲ ନାଁଟିତ। ତୁମେ ପାଠପଢ଼ ।

ସର ମନ ଖୁସି ହୋଇଗଲା। ମୁଁ ଭଲ, ପଢୁଛି, ପଢ଼ିବି। କେଜିମାଟା ସବୁବେଳେ ବିରକ୍ତ ହେଉଛି। ବାପାଙ୍କୁ କହୁଛି ଝିଅ ପିଲାଟା ପାଠ କଣ, ପଢ଼ିବ।

ସର ସ୍କଲରୁ ଆସୁଛି। କୁନାବାବୁ ବାଟରେ ଠିଆ ହୋଇଛନ୍ତି। ଡାକ ଛାଡ଼ିଲେ, ହେ ସର, ଶୁଣ ?

କୁନାବାବୁର ଡାକଶୁଣି ସେ, ଠିଆ ହେଲା

ଆଜି ଇନସ୍‌ପେକ୍ଟର ବାବୁ କହୁଥିଲେ ତୁ, ଭଲପଢୁଛୁ, ପଢ଼ ମୁଁ ସାହାଯ୍ୟ କରିବି ।

ସର କିଛି ନ କହି, ହସିଦେଇ - ଘର ମୁହାଁ ହେଲା ।

କମଳା ଝିଅକୁ ଚାହିଁ ବସିଛନ୍ତି, କେତେବେଳେ ଆସିବ । ସରଦାଣ୍ଡରୁ ଡାକି ଡାକି, ଆସିଲା, ବୋଉ ଶୁଣ, ମୁଁ ପାଠ ପଢ଼ିବି । ଆମ ସ୍କୁଲକୁ ଆଜି ଇନସ୍‌ପେକ୍ଟର ବାବୁ ଆସିଥିଲେ ।

ସମସ୍ତଙ୍କୁ ପ୍ରଶ୍ନ ପଚାରିଲେ, କେହି ଉତ୍ତର ଦେଇପାରିଲେ ନାହିଁ । ମୁଁ ସବୁ ପ୍ରଶ୍ନର ଉତ୍ତର ଦେଲି । ସେ, ଖୁସି ହୋଇଗଲେ । ମୋତେ କହିଛନ୍ତି ପଢ଼ିବା ପାଇଁ । ତୁ, ବାପାଙ୍କୁ କହିବୁ ?

କମଳା ଝିଅର କଥା ଶୁଣି ହସି ଦେଇ କହିଲେ - ହଉ ଆ, ଖାଓସାର, ବାପା ଆସିଲେ କହିବି ।

ସର ଖାଇ ସାରି ଦାଣ୍ଡ ଘରେ ମସିଣା ଖଣ୍ଡେ ପକାଇ ପଢ଼ିବସିଲା । ତାର ମନରେ ଆଜି କେତେ ଆନନ୍ଦ । ସେ, ଭଲପଢୁଛି, କୁନାଭାଇ କହିଛନ୍ତି ସାହାଯ୍ୟ କରିବେ ।

ସରପଢୁଛି, କୁନାବାବୁ ଦାଣ୍ଡଘରକୁ ପଶି ଆସିଲେ, କଣ ପାଠ ପଢ଼ା ଚାଲିଛି ?

ପାଟି ଶୁଣି ସର ଚମକି ପଡ଼ି ଚାହିଁ ଦେଲା, କୁନା ଭାଇ ତା ଆଡ଼କୁ ଚାହିଁ ଛିଡ଼ା ହୋଇଛନ୍ତି ।

ସେ, ତଳକୁ ମୁହଁ ପୋତି ଦେଇ କହିଲା - ହଁ, ପଢୁଥିଲି । କୁଆଡ଼େ ଆସିଲ ?

ନାଁ କାମକିଛି ନାହିଁ । ଘରକୁ ଯାଉଥିଲି, ଦେଖିଲି ତୁ, ପଢ଼ୁଛୁ, ପଶି ଆସିଲି ।

- ହଉ, ବସ ? ମୁଁ ବୋଉକୁ ଡାକେ ?

କମଳା ବାଡ଼ିଆଡ଼େ ଶାଗ ପଟାଳିରେ ପାଣି ପକାଉଥିଲେ ।

ସର ଡାକ ପକାଇଲା, ବୋଉ କଣ କରୁଛୁ, କୁନା ଭାଇ ଆସିଛନ୍ତି ?

କମଳା ଶାଗପଟାଳିରେ ବାଲଟିଟା ଥୋଇ ଦେଇ କହିଲେ, ହଉ ଚାଲେ ମୁଁ ଯାଉଛି ?

କୁନା ଦାଣ୍ଡ ଘରେ ବସିଛି, କମଳା ଆସି ପହଞ୍ଚିଲେ ।

- କଣ କୁନା, ଏତେଦିନେ ମାଉସି ମନେପଡ଼ିଲା ।

- ନାହିଁ ମାଉସି ? ମୋତେ ଟିକେ ହେଲେ ସମୟ ହେଉନାହିଁ ଆସିବାକୁ, ଆମେ ଗୋଟେ ଯୁବକ ସଙ୍ଘ କରିଛୁ ଗାଁ ଖବର ବୁଝୁ ବୁଝୁ ସମୟ ଯାଉଛି । ଆସିବି କେତେବେଳେ ? ଏବାଟେ, ଗୋଟାଏ କାମରେ ଯାଉଥିଲି । ଦେଖିଲି ସର ବସି ପଢୁଛି - ପଶି ଆସିଲି । ସରତ, ଭଲ ପଢୁଛି ।

ହଉ ପୁଅ ବସ ? ଏତେଦିନକରେ ମାଉସି ଘରକୁ ଆସିଛୁ, ମୁହଁ ଟିକେ ଧୋଇବୁ ନାହିଁ ?

- ନାହିଁ ମାଉସି, ତୁମେ ବେସ୍ତ ହୁଅ ନାହିଁ । ମୁଁ, ଗୋଟାଏ କାମରେ ଆସିଥିଲି, ଯାଉଛି । ଖାଇପିଇ ଗଲାବେଳକୁ ଡେରିହେବ । ଆଉଦିନେ ଆସିବି ମାଗି କରି ଖାଇବି ।

ସର ହସିଦେଇ କହିଲା, ଖାଇବାକୁ ହେବ ?

-ହଉ ବସିଲି, ନଖାଇଲେ କଣ ତୁ ଛାଡ଼ିବୁ ?

କମଳା ଗୋଟାଏ ଥାଳିଆରେ କିଛି, ଆରିଷା, କଦଳୀ ଆଣି ଥୋଇଲେ ।

କୁନା ଭାଇ, ଖାଅ ?

ମୁଁ କଣ ଏତକ ଖାଇବି ? ଆ, ତୋର, ମୋର ମିଶି ଖାଇବା ।

କୁନା, ସର ମିଶି ଖାଇଲେ । କମଳା କହିଲେ - କୁନା ? ସର କହୁଛି, ପାଠ ପଢ଼ିବ । ବୁଢ଼ୀ ତ, ଜମା ମଙ୍ଗୁନାହାନ୍ତି । ଆଗକାଳିକା ଲୋକ, ତାଙ୍କୁ ଏଗୁଡ଼ାକ ଜମା ଭଲ ଲାଗୁନାହିଁ । ଏ ଝିଅକୁ କହିଲେ, କମା ବୁଝୁନାହିଁ । ଆମେ ତ ଗରିବ । ଖାତା ବହିପତ୍ର କେଉଁଠୁ ଆଣିବୁ ?

- ମାଉସୀ, ପିଲାଲୋକ ତାର ମନ ହଉଛି ପଢ଼ିବାକୁ ସେ ପଢୁ ? ଆଜିକାଲି ଝିଅମାନେ ତ, ପଢୁଛନ୍ତି ଯାହା ଦରକାର ହେବ ମୁଁ ସାହାଯ୍ୟ କରିବି ।

ସର ହସିଦେଲା, ହେଲା ମୁଁ ପାଠପଢ଼ିବି, କୁନା ଭାଇ ମୋତେ ବହି ଖାତା ଦେବେ ।

କୁନା ଉଠିଲା, ମାଉସୀ ମୁଁ ଯାଉଛି ?

ହଉ ବାପା, ଯାଆ ମଝିରେ, ମଝିରେ, ଆସୁଥିବୁ ମାଉସୀକୁ ଭୁଲିବୁ ନାହିଁ ।

କୁନା ବାଟରେ ଯାଉଛି । ସର କଥା ତାର ମନେପଡୁଛି । ଗାଁ ଯାକରେ ଏତେ ଝିଅ ଅଛନ୍ତି । ସରପରି ତାକୁ କେହି ଦେଖାଯାଉ ନାହାନ୍ତି । ଭଗବାନ ଗରିବ ଘରେ ଜନ୍ମ ଦେଲେ କଣ ହେବ, ଖତଗଦାରେ ପଦ୍ମଫୁଲ ?

ସର ସବୁ ଦିନେ ସ୍କୁଲକୁ ଯାଏ । କୁନା, ମଝିବାଟରେ ତା ଆସିବା ବାଟକୁ ଚାହିଁ ରହିଥାଏ ।

ଆଜି ରାତି ପାହିଲେ କୁମାର ପୂର୍ଣ୍ଣମୀ କାହିଁ ତାର ନୂଆ ଲୁଗା ?

ସର ଖଟ ଉପରେ ମୁହଁ ମାଡ଼ି ଶୋଇ କାନ୍ଦୁଛି ।

କାଲି ସକାଳେ, ତା ସାଙ୍ଗମାନେ ନୂଆ ଲୁଗା ପିନ୍ଧିବେ । ତାର ନାହିଁ ।

କମଳା ଆସି ଝିଅକୁ ଉଠାଇଲେ । ମା, ଉଠୁ ଖାଇବୁ । କାଲି ତୋର ଉପାସ ?

ସର, କଇଁ କଇଁ ହୋଇ କାନ୍ଦିବାକୁ ଲାଗିଲା ।

କମଳା ଝିଅର ମୁଣ୍ଡକୁ ଆଉଁସି ଦେଲେ। ମା ଉଠୁ ? ଦେଖୁଛୁ, ବାପା ଦେହ ଭଲ ନାହିଁ। ଆଜିକୁ ଚାରି ପାଞ୍ଚଦିନ ହେଲାଣି, ଜମିଦାର ଘରକୁ ଯିବାକୁ ନାହାନ୍ତି। ଆମେ ଗରିବ, ଥିଲେ ପିନ୍ଧିବା, ନହେଲେ ନାହିଁ।

ସର, ଉଠି ଭାତ ପାଖରେ ବସିଲା। ଗୁଣ୍ଡିଏ ଖଣ୍ଡେ ଖାଇଛି କି ନାହିଁ ଉଠିପଡ଼ିଲା।

କମଳା ଝିଅକୁ ଚାହିଁଛନ୍ତି - ତାଙ୍କର ଆଖିରୁ ଲୁହ ଗଡ଼ିପଡୁଛି। ନଅଟା ନାହିଁକି, ଛଅଟା ନାହିଁ - ଗୋଟାଏ ବୋଲି ଛୁଆ। ରାତି ପାହିଲେ ସବୁଯାକ ଝିଅ ନୂଆ ଲୁଗା ପିନ୍ଧି ବାହାରିବେ। ଭଗବାନ ମୋ ପାଖରେ ଗୋଟାଏ ଛୁଆ ପାଇ କନାଖଣ୍ଡେ କରିବାକୁ ଶକ୍ତି ଦେଇନାହାନ୍ତି। ହେ ପ୍ରଭୂ ତାଙ୍କ ଦେହ ଭଲ କରିଦିଅ।

ସମସ୍ତେ, ଖାଇ ପିଇ ଶୋଇଲେ।

ଜମିଦାର ଘର ଚାକର ହରିଆ କାଗଜ ପୁଡ଼ାଟି ହାତରେ ଧରିଛି, ଦୁଆର ଠକ୍ ଠକ୍ କଲା।

କମଳା ଦୁଆର ଫିଟାଇ ଦେଲେ। କିରେ, କୁଆଡ଼େ ?

ମା, ସାନସାଆନ୍ତେ ଦେଇଛନ୍ତି ରଖନ୍ତୁ। ହରିଆ ଚାଲିଗଲା।

କମଳା ପୁଡ଼ାଟି ନେଇ ଦାଣ୍ଡ କବାଟ କିଳିଦେଲେ। ସର, ବୋଉ ହାତରୁ ପୁଡ଼ାଟି ନେଇ ଫିଟେଇଲା ହଳଦିଆ ଶାଢ଼ୀ ଖଣ୍ଡିଏ ସୁନ୍ଦର ହୋଇଛି।

କମଳାଙ୍କର ଶାଢ଼ୀଖଣ୍ଡିକ ଦେଖି ମନ ଯେତିକି ଖୁସି ହେଲା ଦୁଃଖ ତାଙ୍କର ତିନିଗୁଣ ବଢ଼ିଲା।

ଗୋଟିଏ ବୋଲି ଝିଅ ଲୁଗା ଖଣ୍ଡିଏ କରବାକୁ ତାଙ୍କର ଶକ୍ତି ନାହିଁ। ମାଗି ଆଣିଲା ତିଅଣ ସୁଡୁକାଏ। ଗାଁ କଥା କିଏ ଜାଣିବ, ଭଲକୁ ଭେଲ କରି ଗାଁ ଯାକ ଡିବି, ଡିବି କରିବେ। ସେ ଆଉ କିଛି ନ କହି ଲୁଗାଖଣ୍ଡିକ ବାକ୍ସରେ ରଖିଲେ।

ରାତି ପାହି ସକାଳ ହେଲା । ଝିଅଯାକଙ୍କର ଆଜି ଆନନ୍ଦ ।

ମାଧବୀ, ସେବତୀ, କେତେ ଝିଅ ପହଞ୍ଚିଗଲେ ସହ ଘରେ ।

ଚଉରା ଧୂଆ । ଫୁଲତୋଡ଼ା ଫୁଲ ଗୁନ୍ଥା ଚାଲିଲା ।

ସନ୍ଧ୍ୟାବେଳକୁ ଝିଅଯାକ ମୁଣ୍ଡକୁଣ୍ଡାଇ, ଅଳତା ପିନ୍ଧି ନୂଆ ଲୁଗା ପିନ୍ଧି ଚଉଣା ମୂଳେ ।

ବ୍ରାହ୍ମଣ ଆସିଲା, ଚଉରା ପୂଜାକଲା । ଝିଅଯାକ କବାଟ କଣରେ ଚାନ୍ଦ ଚକଟା ଖାଇ, ଗାଁ ବୁଲି ବାହାରିଲେ ।

ଜହ୍ନରାତି, ଚାରିଆଡ଼େ ଦିନ ପରି ଦେଖାଯାଉଛି । ଝିଅ ଯାକ, ଦାଣ୍ଡମଝିରେ ଚାଲିଛନ୍ତି ।

କୁନା, ତା ସାଙ୍ଗମାନେ ଦାଣ୍ଡ ଚୌପାଢ଼ି ଉପରେ ତାସ ଖେଳୁଛନ୍ତି ।

କୁନାର ନଜର ପଡ଼ିଗଲା ଝିଅଯାକ ଲୁଗାପିନ୍ଧି ଆସୁଛନ୍ତି । ସର ମଝିରେ ଚାଲିଛି ସିଏ, ଦେଇଥିବା ଲୁଗାଖଣ୍ଡିକ ପିନ୍ଧି ।

ତାର ଆଖିକି ସେ, ବିଶ୍ୱାସ କରିପାରିଲା ନାହିଁ । ତାର ମନ ଖୁସି ହୋଇଗଲା । ସର, ଆଜି ପୂର୍ଣ୍ଣିମାର ଚାନ୍ଦପରି ଦେଖାଯାଉଛି ।

ସେ ଆଜି, ଯେଉଁ ଆଶାରେ ଚାଲିଛି, ଭଗବାନ ସତେ ତା ଗୁହାରି ଶୁଣିବେ । ସର, ଭବିଷ୍ୟତରେ ତା ନିଜର ହେବ । ସେ, ଆଉ ଖେଳିପାରିଲା ନହିଁ । ମନ ଅସ୍ଥିର ହୋଇଉଠିଲା । ଘରକୁ ଯାଇ ନଖାଇ ଶୋଇଲା । ରାତିଯାକ ନିଦହେଲା ନାହିଁ କଣ ଛାଡ଼ିଦେଲା ପରି ଯନ୍ତ୍ରଣା ଅନୁଭବ କଲା ।

ମନେ ମନେ ଠିକ୍ କଲା । ସରକୁ ସଫା ପଚାରିଦବ । ତାର ମତ କଣ ?

ରାମନାରାୟଣଙ୍କ ଦେହ ଭଲ ହେଲାଣି । ସେ, ଜମିଦାରଙ୍କ ଘରକୁ କାମ କରିବାକୁ ଗଲେଣି ।

ଗାଧୁଆ ବେଳ ସର, ଖାଇପାଇ ସାରି କଂସା ବାସନ ତକ ଧରି ପୋଖରି କୂଳକୁ ଗଲା। ବାସନ ତକ ମାଜି ଦେଇ ପାହାଚ ଉପରେ ରଖି ଗାଧୋଇବାକୁ ପାଣିରେ ପଶିଲା। ସେ, ଗାଧୋଇ ସାରି ଓଦାଲୁଗା ଚୁପୁଡୁଛି ?

- ହେ, ସର ?

ସେ ଉପରକୁ ଚାହିଁ ଦେଇ ଚମକି ପଡ଼ିଲା, କୁନା ଭାଇ ପୋଖରୀ ହୁଡ଼ାରେ ଠିଆ ହୋଇ ତାକୁ ଚାହିଁଛନ୍ତି। ଲାଜରେ ତା ମୁହଁ ଲାଲ। ଲୁଗାପଟା ଚୁପୁଡ଼ି ବାସନ ଧରି ସେ, ଘରମୁହାଁ ହେଲା।

କୁନା ତା, ପଛେ ପଛେ ଯାଇ ଡାକିଲା ସର, ଶୁଣ ?

ସର ଓଦାଲୁଗା ପିନ୍ଧିଛି। ବାସନ ହାତରେ ଧରିଛି। ଠିଆ ହେଲା କୁନା ଭାଇ କଣ କହୁଛ ?

- କଣ କହିବି, ବହୁତ ଦିନରୁ ଭାବିଛି ତୋତେ ଗୋଟେ କଥା ପଚାରିବି, ତୁ, ଯଦି ନରାଗିବୁ, କହିବି।

ହଉ, କଣ କୁହ ?

ସର ମୁଁ ତୋତେ ବିବାହ କରିବାକୁ ଚାହୁଁଛି ତୋର ମତ କଣ ?

ସେ, କୁନାରହାତ ଧରି ପକାଇଲା। ନା, ସେ କଥା କୁହ ନାହିଁ। ତୁମ ବାପା ଜମିଦାର। ମୋର ବାପା, ତୁମର ଚାକର। ତୁମର ମାନ, ସମ୍ମାନ ଅଛି। ତୁମେ ମୋର୍ ଯୋଉକୁନା ଭାଇ। ସେହି କୁନା ଭାଇ। ସେ, ଭାଗ୍ୟ ମୋର ନୁହେଁ। ଆଉ କିଛି ନ କହି ସେ କଇଁ କଇଁ ହୋଇ କାନ୍ଦି ପକାଇଲା।

କୁନା, ସରଙ୍କର କଥାବାର୍ତ୍ତା - ଜମିଦାରଙ୍କର ମଉସା ଲେଖା ହେବେ ସେ ଶୁଣିଥିଲେ।

ସେ, କୁନାର ମହିନି ଅଜା - ହେବେ। ଏ ମହନି ଅଜା କମ୍ ଲୋକ ନୁହନ୍ତି। ଅତି ଖଳ ପ୍ରକୃତିର ଲୋକ। ସଜମାଛରେ ପୋକ ପକାନ୍ତି।

ଏ ଘର କଳି ସେ ଘରେ ଲଗାନ୍ତି । ଗାଁ ଲୋକଙ୍କ ବିରୁଦ୍ଧରେ ଜମିଦାରଙ୍କ ଆଗରେ ଚୁଗୁଲି କରନ୍ତି । ସେଥି ପାଇଁ ଗାଁ ଲୋକେ କେହି ତାକୁ ଭଲ ପାଆନ୍ତି ନାହିଁ ।

ଜମିଦାର ଦାଣ୍ଡଘରେ ବସିଛନ୍ତି, ମହନି ପହଞ୍ଚିଗଲେ ।

କଣ ମଉସା, କୁଆଡ଼େ ଆସିଲ ?

ନାହିଁରେ ପୁଅ, ଆସିଥିଲି ତୋ ପାଖରେ ଗୋଟେ କଥା ଥିଲା ।

କଣ କହୁନା ?...

- ଆଉ କଣ କହିବି, ଆଖିରେ ଦେଖିଲି । କାନରେ ଶୁଣିଲି ।

କଣ ମଉସା କୁହ ?

ଏ ଯେଉଁ ରାମନାରାୟଣ - ଗୁମାସ୍ତା, ତାର ଝିଅ ସର, ଆମ କୁନାକୁ ନଷ୍ଟ କରିଲାଣି । ଆଜି ଶୁଣିଲି, ତାକୁ କୁନା ବାହା ହବ । ରାନାରାୟଣକୁ ଡାକି କୁହ ତା ଝିଅକୁ ସେ ଆକଟରେ ରଖୁ । ନହେଲେ ସେ ଏ ସ୍ଥାନ ମାଡ଼ିବ ନାହିଁ । ତୁ, ଜମିଦାର, ମାନ ସମ୍ମାନ ତ ଅଛି ।

ଜମିଦାର ମଉସାଙ୍କଠାରୁ ସବୁ ଶୁଣି ମୁହଁ ତାଙ୍କର ରାଗରେ ଲାଲ୍ ।

ମହନି ମଉସା ଏତକ ପୁତୁରା ଆଗରେ ଚୁଗୁଲି କରି ଘରକୁ ବାହାରିଲେ ।

କୁନା ପିଣ୍ଡା ଉପରେ ଠିଆ ହୋଇ ସବୁ ଶୁଣୁଥିଲା ।

ମହନି ଘରଭିତରୁ ଯେମିତି ପିଣ୍ଡାରେ ଗୋଡ଼ ଦେଇଛନ୍ତି । କୁନା ଉପରେ ତାଙ୍କର ଆଖିପଡ଼ିଗଲା । ଜିଭଟାକୁ କାମୁଡ଼ି ପକାଇ କହିଲେ, କଣ କୁନାବାକୁ ସବୁ ଭଲ ତ ? ହଁ ଅଜା, ସବୁ ଭଲ, ତୁମେ କୁଆଡ଼େ ଆସିଥିଲ ?

ଆସିଥିଲି ତୋ, ବାପା ପାଖରେ ଗୋଟାଏ କଥା ଥିଲା ।

କୁନା ରାଗରେ କହିଲା - ଅଜା ତୁମେ ଯାହା ବାପାଙ୍କୁ କହିଛ । ମୁଁ ସବୁ ଶୁଣିଛି, ଯାହା କୁହ ଅଜା ଏ ଗାଁରେ ତୁମେ ଗୋଟେ ନାରଦ । ମଣିଷ ପ୍ରକୃତି ମଲେ ତୁଟେ, ଘୁଷୁରି ପ୍ରକୃତି ପଙ୍କଲୋଟେ । ତୁମେ ନମରିବା ଯାକେ ତୁମ ପ୍ରକୃତି ଯିବ ନାହିଁ । କି, ତୁମ ନାରଦ ଗିରି ଯିବ ନାହିଁ ।

ମହନି ବୁଢ଼ା ଆଉ କିଛି ନ କହି ଘର ମୁହାଁ ଧରିଲେ ।

ତା ଆରଦିନ ରାମନାରାୟଣ ଜମିଦାରଙ୍କ ଘରେ ହିସାବ କିତାବ କରୁଛନ୍ତି ।

ଜମିଦାର ପଚାରିଲେ, ହରିଆ, ରାମନାରାୟଣ ଆସିଲେଣି ? ହଁ ଆଜ୍ଞା, ଗୁମାସ୍ତା ବାବୁ ଏବେ ଆସିଲେ ।

ତାଙ୍କୁ ଡାକି ଦେ ?

ରାମନାରାୟଣ ଲେଖାଲେଖିରେ ବେସ୍ତ ।

ହରିଆ ଡାକିଲା, ଗୁମାସ୍ତାବାକୁ ବଡ଼ ସାଆନ୍ତେ ଡାକୁଛନ୍ତି ।

ରାମନାରାୟଣ ଯାଇ, ଜମିଦାରଙ୍କ ପାଖରେ ଠିଆ ହେଲେ । ଆଜ୍ଞା ହଜୁର, କାହିଁକି ଡାକୁଥିଲେ ? କାହିଁ ଡାକୁଥିଲି, ତୁମ ଝିଅକୁ ଆକଟରେ ରଖ ମୋ ପୁଅ ନଷ୍ଟ ହୋଇଗଲା । ଆଉଦିନେ ଯଦି ମୋ କାନରେ ପଡ଼େ, ତୁମେ ଏଠାରେ ରହି ପାରିବ ନାହିଁ ବୁଝିଲ ?

ସେ, ଆଉ କଣ କହିବେ ମନଦୁଃଖରେ ଘରକୁ ଆସି ଦାଣ୍ଡପିଣ୍ଡାରେ ମୁଣ୍ଡରେ ହାତଦେଇ ବସିଛନ୍ତି ।

ମା, ଦାଣ୍ଡ ଘରେ ବସିଥିଲେ । ଚାହିଁ ଦେଲେ ପୁଅ ମୁହଁ ଶୁଖାଇ ଦାଣ୍ଡପିଣ୍ଡାରେ ବସିଛି । ସେ, ଡାକ ପକାଇଲେ ରେ, ରାମ, ଯା ଗାଧୋଇବୁ ଖାଇବୁ, ମୁହଁ ଶୁଖାଇ କଣ ବସିଛୁ । ଜମିଦାର, କଣ କହିଲେ କି ?

ସେ, ଆଖି ଛଳ, ଛଳ କରି କହିଲେ - ବୋଉ କଣ କହିବି, ମୋ, ଭାଗ୍ୟ ମୋତେ ଶୁଣାଉଛି । ଏ ବର୍ଷ ସରକୁ ହାତକୁ ଦିହାତ ନକଲେ ମୁଁ ଏ

ଗାଁରେ ମୁଣ୍ଡଗୁଞ୍ଜି ପାରିବି ନାହିଁ । ଯେତେ କହିଲି ଏ ଝିଅକୁ ତୁ, କୁନାସାଙ୍ଗରେ କଥାବାର୍ତ୍ତା କରନା, ସେ କଣ ମାନୁଛି ?

ବୁଢ଼ୀ ରାଗି ଉଠିଲେ, ଯେତେ କହିଲି ତୋତେ, ଆମର ପାଠପଢ଼ା ଦରକାର ନାହିଁ, ଶୁଣିଲୁ ନାହିଁ । ଏବେ କଣ କରୁଛୁ କର ?

ରାମନାରାୟଣ ଗାଧୋଇ ପୂଜା କରି ଖାଇ ବସିଛନ୍ତି । କମଳା ଆସି ପଚାରିଲେ, ବୋଉଙ୍କ ଆଗରେ କଣ କହୁଥିଲ କି ?

କଣ ଆଉ କହିବି, ଜମିଦାରଙ୍କୁ କିଏ କହିଛି ଆମ ଘର ନାଁରେ । ଘର ଲାଗି ତାଙ୍କ ପୁଅ ନଷ୍ଟ ହୋଇଯିବ । ସେ ମୋତେ ଡାକି କହିଛନ୍ତି, ଆଉ ଦିନେ ଯଦି ସେ କିଛି ଶୁଣନ୍ତି ମୋ ଚାକିରୀ ସେଠାରୁ ଯିବ ।

ଯାହା ଭଗବାନଙ୍କର ବରାଦଥିବ ମୁଁ ଆଉ କଣ କରିବି ।

କମଳା ଆଖି ଛଳ ଛଳ କରି କହିଲେ - କୁନାଟି ଭଲପିଲା, ସେ ଟିକେ ଏଠାକୁ ଆସେ ବୋଲି, ଲୋକଙ୍କ ଦେହ ସହୁନାହିଁ ।

କୁନା କାହାକଥା ଶୁଣେ ନାହିଁ । ରାମନାରାୟଣଙ୍କ ଘରକୁ ଆଗପରି ଯିବା ଆସିବା କରେ ।

ଜମିଦାର ସବୁକଥା ଜାଣିଲେ, ସେ, ରାମନାରାୟଣଙ୍କୁ ଡକାଇ ଚାକିରୀରୁ ବାହାର କରି ଦେଲେ ।

ସେ ଚାକିରୀ କରୁଥିଲେ ବୋଲି ଚଳୁଥିଲେ । ଚାକିରୀ ଗଲାରୁ ଅଧେ ସମୟ ଚୁଲି ଜଳିଲା ନାହିଁ ।

କୁନା ସବୁ ଜାଣେ । ବାପାଙ୍କୁ କିଛି ନ କହି, ମଝିରେ ମଝିରେ ପଇସା ପତ୍ର କିଛି ସାହାଯ୍ୟ କରେ ।

ଗାଁରେ ଆସିଲା ହଇଜା । ସନ୍ଧ୍ୟା ହେଲେ ଗାଁରେ, ତାଟି କବାଟ ବନ୍ଦ । ହଠାତ୍ ରାମନାରାୟଣ ବାବୁଙ୍କ ମା ଏବଂ ସ୍ତ୍ରୀଙ୍କୁ ହଇଜା ଧରିଲା ।

ରାତି ଅଧକୁ ଶେଷ । ଗାଁରେ, ହୁରି ପଡ଼ିଲା । ରାମନାରାୟଣଙ୍କ ଘରୁ ଦୁଇଟା ଗଲେ ।

କୁନାବାବୁ ସକାଳୁ ଶୁଣି ରାମନାରାୟଣଙ୍କ ଘରେ ପହଞ୍ଚିଲେ ଦିନ ଦୁଇଘଡ଼ି ହୋଇନାହିଁ, ରାମନାରାୟଣଙ୍କୁ ଧରିଲା । ଦୁଇଟା ଝାଡ଼ା, ବାନ୍ତିରେ ଖର ନିଶ୍ୱାସ ବୋହିଲା । ପାଟି ଖନି ବାଜି ଯାଉଛି । ସର କୁନା ପାଖରେ ବସିଛନ୍ତି । ସରକୁ ଚାହିଁ ତାଙ୍କର ଆଖିରୁ କେତେ ବୁନ୍ଦା ତତଲା ଲୁହ ଗଡ଼ି ପଡ଼ିଲା ।



# ଭଙ୍ଗା ସଂସାର

ଗାଧୁଆ ତୁଠ, କମଳି ଗାଧୋଇ ଯାଇଛି । ଚାଳ ଉପରେ କୁଆଟିଏ, କାଆ କାଆ କରୁଛି ।

ସରୋଜିନୀ ଭାତ କଂସାଏ ବାଢ଼ି - ବାଢ଼ି ଖଣ୍ଡିଏ ଧରି ବସିଛନ୍ତି । ମଲା, କଣ ଏତେବେଳଯାକେ ଗାଧୋଉଛି । ଘଡ଼ିଏ ହେଲାଣି ଗଲାଣି ମୁଁ କଣ ଭାତ କଂସା ଜଗି ବସିଥିବି । ଲୋ, କମଳି କମଳି ଲୋ ?

କାହିଁକି, କମଳି, କମଳି ହଉଛୁ ବୋଉ ?କମଳି କଣ ମରିଯାଉଛି ? ଗାଧୋଇଲେ ତ, ଆସିବି ।

ମଲା ? ଗାଧୁଆ ବେଳ ହେଲାଣି - ତତେ ଭୋକ କରୁନାହିଁ । ହଉ, ବସ ଭାତ କଂସା ପାଖରେ, ମୋର କେତେ କାମ ଅଛି ? କୁଆଟାଏ କାଆ, କାଆ ହଉଛି ଘଡ଼ିଏ ହେଲାଣି । ଚିଠି ଦେଇଥିଲେ ତୋ, ବାପା ଆସିବେ ତିନି ଚାରି ଦିନେ ? କେଜାଣି, ଆସିବେ ପରା ?

ପେଟ ଚାଖଣ୍ଡକ ଲାଗି ବିଦେଶରେ ପଡ଼ିଲେ । ମୁଁ, ଏଠି ରହିଲି, ତାଙ୍କ କଥା ବୁଝିବ କିଏ ? ପ୍ରଭୁ ତାଙ୍କ ଭରସା । ଆମେ ଦୁଃଖି ଲୋକ ଦୁଃଖ କଲେ ଖାଇବୁ । ଝିଅଟି ମୁଣ୍ଡ ଉପରେ, ଦୁଇ ପଇସା ହେଲେ ଉଠିବ । ଆଜିକାଲି ବିନାଯୌତୁକରେ କିଏ ବାହାହେବ । ସରୋଜିନୀ ଏତକ କହି ପିଣ୍ଡା ଉପରେ ବସିପଡ଼ିଲେ ଆଖିଛଳ ଛଳ କରି ।

ଶ୍ୟାମବାବୁ, ଦେବବାବୁ ଦୁଇ ଭାଇ । ପିତୃ ଅର୍ଜିତ ସମ୍ପତ୍ତିରୁ ଦୁଇ ଭାଇ ଭିନ୍ନେ ହୋଇ ରହିଛନ୍ତି । ଦେବବାବୁ କିରାନୀ କାମ କରନ୍ତି କଟକରେ ।

ସରୋଜିନୀ ଘରକୁ ଏକା । ପୁଅ ଦୁଇଟା ହୋଇଥିଲେ । ଝିଅ ଦୁଇଟା ହୋଇଥିଲେ । ସବୁ ତ ଗଲେ, ଭଗବାନ ଗୋଟାଏ ରଖିଛନ୍ତି ଯମ ଅଇଁଠାରୁ । ଏ ଭଙ୍ଗା ସଂସାରରେ କଣ ଅଛି । ସେ, ଗୋଟାକ ଆଗରେ ଆମ ଦୁଇଜଣଙ୍କ ଦିନ କିପରି ଯିବ, ପ୍ରଭୁଙ୍କୁ ଜଣା ? ସତେ ଝିଅ ମୋର, ହାତକୁ ଦିହାତ

ହୋଇ, କାଚ, ମାଛ ନେଇ ଘର କରିବ ? ଚାହୁଁ ଚାହୁଁ ଏଗାର ପୁରୀ ବାର ଚାଲିଲା, କାଲି ପରି ଦିନ କୁଆଡ଼େ ଚାଲିଯିବ । ତା, ଚିନ୍ତା ମୁଣ୍ଡରେ ପୂରାଇଲେ, ମୋ ମୁଣ୍ଡ ଘୁରିଯାଉଛି । ହେ, ପ୍ରଭୁ ? ମୋ, ଭଙ୍ଗାସଂସାରକୁ ବଜ୍ର କର ।

କମଳି ନାହିଁ । ଯାଇଛି, ସାହିର ବିମଳନାନୀ ଘରକୁ । ବିମଳି ନାନୀର ଝିଅ ଗଉରୀ, କମଳିର ଭାରି ସାଙ୍ଗ । ଦିନେ ନ ଦେଖିଲେ ଗଉରୀକି କମଳି ରହିପାରେ ନାହିଁ । ଗଉରୀ ମଧ୍ୟ ଦିନେ କମଳିକି ନ ଦେଖିଲେ ରହିପାରେ ନାହିଁ ।

ବିମଳାନାନୀ ଘର, ଥିଲାବାଲା । ତା, ପୁଅ ନାଁ ନବ । ସିଏ କଟକରେ ଇଂଲିଶରେ ଏମ୍.ଏ ପଢ଼ୁଛି । ସେ ଘରକୁ ଆସିଛି । କମଳି, ନବ, ପିଲାଟି ଦିନରୁ ସାଙ୍ଗ । କମଳି ଡାକେ ନବଭାଇ । ନବ ମଧ୍ୟ କମଳିକୁ ନିଜ ଭଉଣୀଠାରୁ ଅଧିକ ଭଲପାଏ ।

କମଳି ପ୍ରତିଦିନ ବିମଳ ନାନୀ ଘରକୁ ଯିବା ଆସିବା, କରିବାରୁ ଗାଁ ଲୋକ ପସନ୍ଦ କଲେ ନାହିଁ । ଶାଇ ପଡ଼ିଶାରେ ଟୁପୁର, ଟାପର ହବାକୁ ଲାଗିଲେ ।

ନବ ଯେତେବେଳେ ଆସେ କଟକରୁ ଦେବବାବୁଙ୍କଠାରୁ ଭଲ ମନ୍ଦ ବୁଝିକରି ଆସେ ।

ଆଜି, ନବ ଆସିଛି କଟକରୁ, ଦେବବାବୁ ତା, ହାତରେ ଚିଠିଖଣ୍ଡିଏ ଦେଇଛନ୍ତି ।

"କମଳି ବୋଉ ଜାଣିବ । କମଳିକି ମୋର ଆଶୀର୍ବାଦ । ବହୁତ ପରିଶ୍ରମ ପଡୁଛି । ମୋର ଦେହ ଜମା ଭଲ ଭଲ ରହୁନାହିଁ । ଡାକ୍ତରଙ୍କୁ ଦେଖାଇବାରୁ ବିଶ୍ରାମ ନେବାକୁ କହୁଛନ୍ତି । ହାକିମ ଛୁଟି ଦଉନାହାନ୍ତି । ଆଶାକରେ ସବୁ ଭଲ ଥିବ । ଛୁଟି ମିଳିଲେ ଯିବି । ରହିଲି ।"

ସରୋଜିନୀ ଚିଠିଟିକୁ ପଢୁଛନ୍ତି, ଆଖିରୁ ତାଙ୍କର ଲୁହ ଗଡ଼ି ଚାଲିଛି । ହେ ପ୍ରଭୁ ମୋ ଭଙ୍ଗା ସଂସାରକୁ ଦୀର୍ଘାୟୁ କର ।

କମଳି ତାର ସକାଳୁ ଗଣ୍ଡାଏ ଖାଇ ଯାଇଛି । କାଲି ଖୁଦୁରୁକୁଣୀ ଓଷା । ଗଉରୀର ତାର ଯୋଡ଼ି । କେଉଁଠି ଫୁଲ ତୋଳିବେ, କୁଣ୍ଢେଇ ଆଣିବେ । ନବଭାଇ ଆସିଛି ସବୁ ଯୋଗାଡ଼ କରିଦେବ । କମଳି ଓ ଗଉରୀର ଆନନ୍ଦରେ ଗୋଡ଼ତଳେ ଲାଗୁନାହିଁ ।

ସରୋଜିନୀ ଗାଧୋଇ ଯାଉଛନ୍ତି । ଗାଧୁଆ ତୁଠ, ପିତେଇ ନାନୀ କେତେ ମାଇପେ, ଗାଧୋଉଛନ୍ତି ।

ପିତେଇ ନାନୀ ବଡ଼ ଖରଖରିଟା । ତା ପାଟିଟା କେଉଁଠି ରହେ ନାହିଁ । ତା ପାଟି ଶୁଣିଲେ, ଗର୍ଭିଣୀ ଗାଈ ବାଟ ଛାଡ଼େ ।

ପିତେଇ ନାନୀ କହିଲା - ହଇଲୋ, କମଳି ବୋଉ ? କମଳି, କି କଣ ହାତକୁ, ଦିହାତ କରିବୁ ନାହିଁ ? ଗାଁ ଯାକ ଯାହା କହୁଛନ୍ତି, ଭଲ ଲାଗୁଛି ।

ସରୋଜିନୀଙ୍କର ଛାତି ଭିତର ଦାଉଁ କିନା ପଡ଼ିଲା । କଣ ମୋ ଝିଅ କଲା ଯେ, ନାନୀ, ଏମିତି କହୁଛ ? ଝିଅମାନେ କଣ ସାଙ୍ଗ, ସୁଖ ହୁଅନ୍ତି ନାହିଁ । ଖାଲି ଝିଅ, ବୋହୁ କେଉଁଠି ବସିଲେ - ଉଠିଲେ, ତୁମ୍ଭର ସେଇକଥା । ମୋ ଝିଅ କଣ ବାହା ହେବ ନାହିଁ ରହିବ ? ବାପତ, ବିଦେଶରେ ପେଟ ଚାଖଣ୍ଡକ ପାଇଁ ପଡ଼ିଲେ । ମୁଁ ମାଇକିନାଟା ସିନା ଘର ସମ୍ଭାଳିବି, ଆଉ ଦାଣ୍ଡ ମୁଣ୍ଡ କଥା ତ, ବୁଝିବି ନାହିଁ ? ନାନୀ କହୁନା, ମୁଁ ଯାହା କହୁଛି, ସତ, ନାଁ ମିଛ କୁହ ? ଗରିବ ମାଇପ ସମସ୍ତଙ୍କର ଶାଳୀ ।

ପିତେଇ ନାନୀ ମୁହଁଟାକୁ ମୋଡ଼ି ଚିହିଁକି ଉଠିଲା । ହଇଲୋ, କମଳି ବୋଉ ? ମୁଁ କଣ କହିଲି କି ? ଭଲ କହିଲେ, ଯଦି ମନ୍ଦ ହେଲା, ଆମ କଥା ଆମର ଥାଉ । ଆମକୁ କିଏ ଦବା ନାଁ ନବ ? ଏତକ କହି, ସେ ମହାଦେବ ମନ୍ଦିର ମୁହାଁ ହେଲା । ମନ୍ଦିରରେ ମୁଣ୍ଡିଆଟିଏ ମାରି ଘରକୁ ଗଲା ।

ଆଜି ଖୁଦୁରୁକୁଣୀ ଓଷା, କେତେ ଝିଅ ଆସିଛନ୍ତି । ବିମଳନାନୀ ଘରେ ପୂଜା ଚାଲିଛି । ନବ ସବୁ ଯୋଗାଡ଼ କରିବାରେ ବ୍ୟସ୍ତ । ପୂଜାପୂଜି ସରିଲା । ଯେ ଯୁଆଡ଼େ ଗଲେ ।

ସରୋଜିନୀ ଦୁଃଖ, ସୁଖରେ ଚଳୁଥାନ୍ତି । କାହା, ଭଲ ମନ୍ଦରେ ନଥାନ୍ତି । ସ୍ୱାମୀଙ୍କ କଥା ମନେପଡ଼ିଗଲା - ଚିଠି ଦେଇଛନ୍ତି, ଦେହ ଭଲ ରହୁନାହିଁ । ଡାକ୍ତର କହୁଛନ୍ତି ବିଶ୍ରାମ ନବାକୁ । ହାକିମ ଛୁଟି ଦଉ ନାହାନ୍ତି । ମୁଁ କଣ କରିବି ?...

ଆଜିକୁ ଆଠଦିନ ହେବ ନବ କଟକ ଗଲାଣି । ତା, ହାତରେ ଖବର ଦେଇଥିଲି, ଦେହ, କିପରି ଅଛି ଜଣାଇବାକୁ, ଏ ପର୍ଯ୍ୟନ୍ତ କିଛି, ଖବର ନାହିଁ । ହେ, ପ୍ରଭୁ ତୁମେ ହିଁ ସାହା ।

କୁଆଟାଏ ପାଖରେ, କାଆ, କାଆ ହେଲା । ସରୋଜିନୀ ବିରକ୍ତ ହୋଇ ରୋଷେଇ ଘରକୁ ଗଲେ । କମଳି ବହି ଖଣ୍ଡେ ଧରି ଖଟ ଉପରେ ବସି ପଢୁଛି ।

ଶ୍ୟାମପଧାନ ପୁଅ ପରିଆ ଡାକ ଦେଲା - ହେ, କମଳିନାନୀ, ତୁମର ଚିଠି ଆସିଛି ନିଅ ?

ସରୋଜିନୀ ରୋଷାଇ କରୁଥିଲେ ଦୌଡ଼ି ଆସିଲେ । ଆରେ, ପରି ତୁ, ବଜାରକୁ ଯାଇଥିଲୁ କି ? ହଁ ମାଉସୀ ? ବଜାରକୁ ଯାଇଥିଲି, ଡାକପିଅନଟା ଆମ ଗାଁ ଚିଠି, ମୋ ହାତରେ ଦେଲା । ତୁମର ଚିଠି ଆସିନାହିଁ । ଜରୁରୀ କାଗଜ ଗୋଟେ ଆସିଛି । ଦିଅ, କମଳିନାନୀକୁ ପଢୁ ?

ସେ ଝିଅ ହାତକୁ କାଗଜଟା ବଢ଼ାଇ ଦେଲେ । ଦେଖେ ଚଞ୍ଚଳ କି, କାଗଜ ?

କମଳି ଦେଖିଦେଇଛି ସେ, କାଗଜକୁ ଚମକି ପଡ଼ିଲା । ନବ ଭାଇ ଟେଲିଗ୍ରାମ କରିଛନ୍ତି - ମଉସା, କାଲି ରାତି ବାରଟାବେଳେ ଚାଲିଗଲେ ।

ସରୋଜିନୀ, କମଳି ମୁଣ୍ଡ ବାଡ଼େଇ କାନ୍ଦିଲେ । ହେ, ପ୍ରଭୁ ତୁମେ କଣ ନକଲ ? ମୋର ଭଙ୍ଗା ସଂସାର ଯୋଡ଼ିବ କଣ ଭାଙ୍ଗିଦେଲ ?

କାନ୍ଦ ବୋବାଳି ଶୁଣି ଗାଁ ଲୋ ଦୌଡ଼ି ଆସିଲେ । ମା ଝିଅଙ୍କୁ ବୁଝାବୁଝି କଲେ ।

ନବ ତା ଆରଦିନ ଗାଁରେ ଆସି ପହଞ୍ଚିଲା ।

ସରୋଜିନୀ କାଠପାଷାଣ ପରି ପଡ଼ିଛନ୍ତି, କମଳି, ଗୋଟେ ଘରେ ପଡ଼ି କାନ୍ଦୁଛି ।

ନବ କମଳିକି ନିଜ ଭଉଣୀଠାରୁ ଆହୁରି ଭଲ ପାଏ । ସେ, ସରୋଜିନୀଙ୍କ ପାଖରେ ବସିପଡ଼ିଲା । ମୁଁ ଅଛି, ମାଉସି? ମତେ, ମଉସା ଗଲାବେଳେ କହିଛନ୍ତି - ବାପା, ନବ ? ତତେ କମଳି ଲାଗିଲା । କିଛି ଚିନ୍ତା କର ନାହିଁ ମାଉସୀ ? ଧୈର୍ଯ୍ୟ ଧର ।

ଦେବବାବୁଙ୍କ ଶୁଦ୍ଧିକ୍ରିୟା ସରିଲା । ପିତେଇ ନାନୀ ଆସୁଛି, ଦାଣ୍ଡରେ ଶ୍ୟାମବାବୁଙ୍କର ଦେଖା ହୋଇଗଲା । ହଇଲୋ, ନାନୀ ? ଆମ, କମଳି କଥା କହୁଥିଲି, ମୋତେ, ଆମ ଗାଁରେ - ରଖେଇ ଥୋଇ ଦଉନାହାନ୍ତି । ଦାଣ୍ଡରେ, ଘାଟରେ କହୁଛନ୍ତି, ଗଉରୀ, ରାଧା, ବାହା ତୋଳା ହୋଇ ଘର ଦ୍ୱାର କଲେ- ତୁମେ ଭାଇନା, ଝିଅକୁ ବାହା କରିବ ନାହିଁ । ଆମ, ସାନବୋହୂ ଝିଅକୁ ବାହା କରିବେ ନାହିଁ । ରଖିବେ, ରଖନ୍ତୁ ? ନ କହିଲେ, ଚଳୁନାହିଁ । ଭାଇତ, ଗଲା । ଦାଣ୍ଡଲୋକ କହିବେ, ବଡ଼ ବାପାଟା ତା ଥିଲା କଣ କଲା ?

ପିତେଇ ନାନୀ ତ ସିଏ । ପାଟି ଟାଏ କଲା, ବାପ, କହନାରେ ? ଦେବ ବଞ୍ଚି ଥିଲାବେଳେ, ସେଇ କଥା କମଳି ବୋଉକୁ କହିଲି, ଯେ ? ସେ ମୋତେ ବାରକଥା, ଝିଙ୍ଗାସିଲା । ଏ ଥରକ ବୁଝନ୍ତୁ ? ଆରେ, ବାପ ଜାଣିଛୁ ? ଗଉରୀ ଭାଇନବା, କି ଇଂଲିଶ ପଢ଼ୁଛି, ସେ, ଯଦି ଘରକୁ ଆସିଲା କମଳି ତାପାଖ ଚାଡ଼ିଲା ନାହିଁ । କରନ୍ତୁ ? ଏହି ଆଖି ଦେଖୁଥିବ । କାନ ଶୁଣୁଥିବ, ପାଟି ନଫିଟିଲେ ଗଲା ।

ଶ୍ୟାମବାବୁ ପିତେଇ ନାନୀର ଦାଣ୍ଡପିଣ୍ଡାରେ ମୁଣ୍ଡରେ ହାତେଇ ବସିପଡ଼ିଲେ । କଣ କରବି, ନାନୀ ? ଝିଅଟା ପାଇଁ, କେଉଁଠି ଦେଖିବାକୁ ହେବ । ପଇସା ପତ୍ର ତ କିଛି ନାହିଁ । ଯେଉଁଠି ଦବାକୁ, ନବାକୁ ପଡ଼ିବ ନାହିଁ ସେଇଠି କରିବା । ନାନୀ ମୁଁ କଣ କହୁଥିଲି କି ? ଆମ ଗାଁ ଆରପାଖରେ, ହଳଦିଆ ଗାଁ ମ ? ଯୋଉ ରାମନାହକ ପୁଅ ନଟିଆ । ତା ଘରକୁ ଏକା,

କେହି ନାହିଁ । ଜମିବାଡ଼ି ଯାହାଅଛି, ବର୍ଷକ ଖାଇ ପିଇ ଚଳିଯିବ, ସେଇଠି କମଳି କି କଲେ । ହୁଅନ୍ତା ନାହିଁ ? ତୁ, ଟିକେ, ଆମ ସାନବୋହୂକୁ ପଚାରି କହିବୁ ?

ହଉବାପ, ମୁଁ ପଚାରେ କମଳ ବୋଉକୁ ?

ସ୍ୱାମୀ ଗଲାଦିନରୁ ସରୋଜିନୀ ଦାଣ୍ଡଦୁଆର ମାଡ଼ନ୍ତି ନାହିଁ । କି, ଝିଅକୁ କେଉଁଠିକୁ ପଠାନ୍ତି ନାହିଁ ।

ନବ ମଝିରେ ମଝିରେ ତାଙ୍କ କଥା ବୁଝେ । ସେ, ଝିଅ ପାଇଁ କେତେ ଚିନ୍ତା କରିବେ । ବାପ ନଥିଲା ଝିଅ, କେଉଁଠି ତା କପାଳରେ ଅଛି କେଜାଣି ? ସତେ ପ୍ରଭୁ ? ହାତକୁ ହି ହାତ କରି ଭଙ୍ଗା ସଂସାର ଯୋଡ଼ିବେ । ତାଙ୍କ ଆଗରେ ମୋ ଦିନ ସରିବ ?

ସରୋଜିନୀ ଅଗଣା ପହଁରୁଛନ୍ତି, ପିତେଇ ନାନୀ କବାଟ ଧଡ୍ ଧଡ୍ କରି । ଡାକ ପକାଇଲା - ଲୋ, କମଳି ବୋଉ, କବାଟ ଫିଟା ?

ସେ ପହଁରା ମୁଠାକ ପିଣ୍ଡାଉପରକୁ ଫୋପାଡ଼ି ଦେଇ, କବାଟ ଫିଟାଇ ଦେଲେ । ନାନୀଙ୍କର ଯାହା ହେଉ ଏତେଦିନେ ମନେ ପଡ଼ିଲା ?

ପିତେଇ ନାନୀ, ଅଗଣା ମଝିରେ ବସିପଡ଼ିଲା । କମଳି ବୋଉ ବସ ? ତୋ ଦେଢ଼ଶୁର କମଳି ପାଇଁ ଗୋଟିଏ ପ୍ରସ୍ତାବ ଠିକ୍ କରିଛନ୍ତି  କରିବୁ କି ? ଦବା ନବା କିଛି ନାହିଁ । ବିନା ଯୌତୁକରେ ବାହାଘର ?

ସରୋଜିନୀ ଖୁସି  ହୋଇଗଲେ ଏବଂ କହିଲେ - ହଁ ନାନୀ, କରିବି ନାହିଁ କାହିଁକି ? ସେ ପିଲାର ଗାଁ କେଉଁଠି, ପିଲାଟି କଣ କରେ, ଜମିବାଡ଼ି କଣ ?

ପିତେଇ ନାନୀ କହିଲା - ସବୁ, ଆଛା, ସେ ପିଲାର ଘର ହଳଦିଆ । ଆମ ଗାଁ ଆରପଟ, ରାମ ନାହକ ପୁଅ । ଗୋଟିଏ ପୁଅ, ବାପ ମା, ମଲେଣି । ଘରକୁ ଏକା । ଜମିବାଡ଼ି ଯାହାଅଛି ବର୍ଷକ ଯିବ । ଯୌତୁକ ଦବାକୁ ପଡ଼ିବ ନାହିଁ ।

ସରୋଜିନୀ ଖୁସି ହୋଇଗଲେ । ଭଲ ହେଲା, ଝିଅ ମୋର ଖାଇ ପିଇ ସୁଖରେ ରହିଲେ ହେଲା ।

ବାହାଘର ଠିକ୍ ହେଲା । କମଳି ବୋଉକୁ ଡର ନାହିଁ । ସେ ଦିନସ୍ଥିର କରି ସବୁ ବିଷୟ୍ ଲେଖି ନବ ପାଖକୁ ଚିଠିଦେଲା ।

ବାହାଘର ଦିନେ ଅଛି । ନବ ଚିଠି ପାଇଲା । ହଳଦିଆ ନବର ମଉସା ଘର । ସେ, ନଟିଆକୁ ଚିହ୍ନିଛି । ଚିଠି ପାଇ କମଳି ଲାଗି ମନ ତାର ଦୁଃଖ ହୋଇଗଲା । ଦେବର ମଉସାଙ୍କ କଥା ମନେପଡ଼ିଲା । ଗଲାବେଳେ କହିଥିଲେ ବାପା, କମଳି ଲାଗିଲା ?

ଆଜି, ମୁଁ ବଞ୍ଚି ଥାଉ ଥାଉ, ଗଞ୍ଜୋଡ଼ ଗୁଲିଆ ନଟିଆ ହାତରେ କମଳିକି ଟେକିବି, ଉପରେ ଥାଇ ଦେବ ମଉସା ସନ୍ତୁଷ୍ଟ ହେବେତ ?

ଆଜି ବାହାଘର । ବନ୍ଧୁବାନ୍ଧବ ଘରେ ଭର୍ତ୍ତି । ଶ୍ୟାମବାବୁ ଏପାଖ ସେପାଖ ହଉଛନ୍ତି । ନବ ଆସି କଟ କରୁ ପହଞ୍ଚି କହିଲା - କମଳି ବାହାଘର ହୋଇପାରିବ ନାହିଁ । ଗଞ୍ଜୋଡ଼ ଗୁଲିଆ ହାତରେ ଦେବ ?

ସରୋଜିନୀ କାନ୍ଦୁଛନ୍ତି, ନବ ସରୋଜିନୀଙ୍କ ପାଖରେ ବସିପଡ଼ିଲା, ମାଉସୀ , କଣ କଲ, କମଳିକୀ ? ତଣ୍ଟିଚିପି ମାରିଦେଲ ନାହିଁ । ନାଁ, ମୁଁ, କମଳିକି ନଟିଆ ହାତରେ ଦେଇ ପାରିବି ନାହିଁ?

କମଳି ମଙ୍ଗୁଳି ହୋଇ ବସିଛି । ଯୋଉଁ, ବରଜାତି ଆସି ପହଞ୍ଚିଲେ । ଘରେ ଯୋଇଁ ବସିଛି ।

ସରୋଜିନୀ ଦେଖିଦେଇ କାନ୍ଦି ଉଠିଲେ । ନାଁ ମା ଝିଅ ବାହାହବ ନାହିଁ ।

ନବ, ବରଜାତି ଏବଂ ଯୋଇଁ ସମସ୍ତଙ୍କୁ ଫେରାଇ ଦେଲା ।

କମଳି ମଙ୍ଗୁଳି ହୋଇ ବସିଛି । ତାର ଆଖିରୁ ଲୁହ ଗଡ଼ିପଡୁଛି ।

ନବର କେକେ ବାପା ପଧାନବୁଢ଼ା । ସେ, ବିମଳ ବୋଉକୁ କହିଲେ - ଦେବର ଝିଅ, ଆମର କଣ ଝିଅ ନୁହେଁ । ନବଟିକୁ କମଳି ସାଙ୍ଗରେ ବାହା କର । କଣ କହୁଛ ?

ବିମଳ ବୋଉ ନାହିଁ କରି ପାରିଲେ ନାହିଁ । ଯାହା ହେଉ - ଭଗବାନ ଭରଷା ।

ପୁଣି ବାଜା ବାଜିଲା । ଶଙ୍ଖ ହୁଳହୁଳି ପଡ଼ିଲା । ନବ, କମଳିକୁ ବାହା ହେଲା ।

ସରୋଜିନୀ ଠାକୁରଙ୍କ ପାଖରେ ପଡ଼ିଛନ୍ତି ।

ବିମଳ ବୋଉ ଠାକୁର ଘରୁ ସରୋଜିନୀକୁ ଉଠାଇ ଆଣିଲେ, କାନ୍ଦୁଛ କଣ ? ଝିଅ, ଯୋଇଁଙ୍କୁ ଆଶୀର୍ବାଦ କର ?

ସରୋଜିନୀ କାତର କଣ୍ଠରେ କହୁଛନ୍ତି, ହେ ପ୍ରଭୁ ମୋ ଝିଅ-ଯୋଇଁଙ୍କୁ ଆଶୀର୍ବାଦ କର !!



# ମମତା

ଜଗନ୍ନାଥ ମନ୍ଦିରରେ ନୀଳଚକ୍ର ବାନାଉଡ୍ଡୁଛି ।

ସିଂହଦ୍ୱାର ପାଖ ଗରୁଡ଼ଖମ୍ବ ପାଖରେ ଦଶବର୍ଷର ଝିଅ ମାନିନୀ ବସିଛି ତଳେ ଖଣ୍ଡେ ମସିଆ ଚିରା କନାପକାଇ । ରଙ୍ଗଟି ତାର ଶ୍ୟାମଳ । ମୁହଁଟି ଡଉଲ ଡାଉଲ । ବାଳଗୁଡ଼ିକ କୁଞ୍ଚୁକୁଞ୍ଚିଆ । ଫ୍ରକ୍ ଖଣ୍ଡିକ ସତେକି କେଉଁକାଳରୁ ଧୂଆ ହୋଇନାହିଁ । ଜାମା ଖଣ୍ଡିକରେ ଠାଏ ଠାଏ, ଚିରା । ଖରା କି ବର୍ଷା, ସତେକି ସେହି ଗରୁଡ଼ ଖମ୍ବ ଭୂମି ଚାଖଣ୍ଡକ ତାର ଅତି ଆପଣାର ।

ସେ, ବାଟେ ଯିଏ ଯାଏ ମାନିନୀ ହାତ ପତାଇ ମାଗେ ବାବୁ, ଧର୍ମ ହବ, ପଇସାଟିଏ ଦିଅ । କାହାର ମନ, ପାଇଲେ ଦିଏ, କାହାର ମନ ନ ପାଇଲେ ସେ, ପଇସା ନ ଦେଇ ମୁହଁ ବୁଲାଇ ଚାଲିଯାଏ ।

ଏଇଟା ତାର ସବୁଦିନଆ କାରବାର ।

ମାନିନୀ ସେଇ ପଇସାରେ କେଉଁଦିନ ମହାପ୍ରସାଦ ତ, କେଉଁ ଦିନ ପାଖ ଦୋକାନରୁ ବରା, ଗୁଲୁଗୁଲା ଖାଇ, କଳରେ ପେଟେ ପାଣି ପିଇ, ଫେରିଆସେ ଗରୁଡ଼ଖମ୍ବ ପାଖକୁ ।

ଆଜି କାର୍ତ୍ତିକ ପୂର୍ଣ୍ଣିମା । ମନ୍ଦିରରେ ବହୁତ ଭିଡ଼, ବର୍ଷା ଟୁପୁରୁ ଟୁପୁରୁ ପକାଉଛି । ମାନିନୀ ଚିରା କନା ଖଣ୍ଡିକ ଘୋଡ଼େଇ ପୋଡ଼େଇ ହୋଇ ବସିଛି । ତାର ଦେହଟା ଶୀତରେ ଶିରିଶିରେଇ ଉଠୁଛି । ସେ, ଏ ହାତରେ ସେ, ହାତରେ ଚିରାକନା ଖଣ୍ଡିକ ଟାଣି ପକାଉଛି ।

ସତୁରି ପାଖାପାଖି ହେବ ଜଣେ ବୃଦ୍ଧ ସେହିବାଟ ଦେଇ ମନ୍ଦିରକୁ ଯାଉଛନ୍ତି । ଅଣ୍ଟା ଲଇଁ ପଡ଼ିଲାଣି । ଆଖି ଦୁଇଟା ଭିତରକୁ ପଶି ଯାଇଛି । କାନ୍ଧରେ ଖଣ୍ଡିଏ ଚିରା ଚାଦର । ହାତରେ ବାଡ଼ି ଖଣ୍ଡିଏ ଧରି ଧିରେ ଧିରେ ଚାଲିଛନ୍ତି । କିଛି ବାଟ ଆଗେଇଛନ୍ତି ତାଙ୍କୁ ଶୁଭିଲା ବାବୁ, ପଇସାଟିଏ ଦିଅ ?

ବୃଦ୍ଧ କିଛିକ୍ଷଣ ପାଇଁ ଠିଆ ହୋଇପଡ଼ିଲେ ନିରବ ହୋଇ । ତାଙ୍କୁ ଶୁଭିଲା । ଛୋଟପିଲାର କରୁଣ ମିନତୀ । ସେ, ମିନତୀରେ ଥିଲା ଆକୁଳତା ।

ସେ, ଚାରିଆଡ଼କୁ ଚକିତ ହୋଇ ଚାହିଁଲେ। ତାଙ୍କର ଦୃଷ୍ଟି ପଡ଼ିଗଲା ଗରୁଡ଼ ଖମ୍ବ ପାଖରେ ଝିଅଟିଏ ବସିଛି। ବୃଦ୍ଧଙ୍କର ପାଦ ଚଳିଲା ନାହିଁ ମନ୍ଦିର ଭିତରକୁ। ସେ, ଗରୁଡ଼ ଖମ୍ବ ପାଖକୁ ଫେରିଆସି ଝିଅଟି ପାଖରେ ଛିଡ଼ା ହେଲେ।

ମାନିନୀ ହାତପତାଇ ଦେଲା ବୁଢ଼ାଙ୍କ ଆଡ଼କୁ ବାବୁ, ଧର୍ମହବ ପଇସାଟିଏ ଦିଅ ?

ମାନିନୀର ଡଉଲ ଡାଉଲ, ମୁହଁ, ଝାମ୍ପୁଡ଼ାବାଳକୁ ବୃଦ୍ଧ ଚାହିଁଛନ୍ତି ଏକଦୃଷ୍ଟିରେ। ମନେମନେ ଭାବୁଛନ୍ତି, ଆହାଃ କାହାର ଏ ଝିଅ। ବର୍ଷା, ଶୀତ ଖରାରେ ପଡ଼ିରହିଛି। ତାର କଣ ମା, ବାପ ନାହାନ୍ତି।

ବୃଦ୍ଧଙ୍କର ହୃଦୟ ଦୁଃଖରେ ବିଗଳିତ ହୋଇଉଠିଲା। ତାଙ୍କର ହାତ, ଆପେ ଆପେ ମାନିନୀର ମୁଣ୍ଡ ଉପରକୁ ଚାଲିଗଲା। ଆଉଁସି ପକାଇ ପଚାରିଲେ - ଆରେ, ମା, ତୋର କଣ ବାପ, ମା ଘରଦ୍ୱାର ନାହିଁ ? ସଦା ସର୍ବଦା ଏଠି ପଡ଼ିରହିଛୁ ।

ବୃଦ୍ଧଙ୍କର କଥାରେ ଝିଅଟିର ମୁହଁ ଝାଉଁଳି ପଡ଼ିଲା ଏବଂ କେଇ ଠୋପା ଲୁହ ଆଖି କୋଣରେ ଜକେଇ ଆସିଲା। ସେ ଥରିଲା ଥରିଲା କଣ୍ଠରେ କହିଲା। ମୋର ବାପ, ମା, ଅଛନ୍ତି କି ନାହିଁ ମୁଁ ଜାଣେନା।

ସେ, ମନ୍ଦିର ଆଡ଼କୁ ହାତ ଦେଖାଇ କହିଲା - ଏହି ପତିତ ପାବନ ମୋର ବାପ ମା ? ଏହି ଗରୁଡ଼ ଖମ୍ବ ମୋର ଘର।

ବୃଦ୍ଧଙ୍କର ପିତୃହୃଦୟ ଘାଣ୍ଟି ଚକଟି ହୋଇଗଲା। ମୁଣ୍ଡଟା ଲାଗିଲା ଭାରାକ୍ରାନ୍ତ। ସେ, ମନ୍ଦିରକୁ ନଯାଇ ଝିଅଟି ହାତରେ ଗୋଟିଏ ଟଙ୍କା ଦେଇ, ଗରୁଡ଼ ଖମ୍ବରେ ମୁଣ୍ଡିଆଟିଏ ମାରି ଘରମୁହାଁ ହେଲେ।

ବାଟଯାକ ତାଙ୍କର ଅସରନ୍ତି ଭାବନା। ନିଜର ଦୁଃଖ ଜଣେଇବାକୁ ଘରେ ମଧ୍ୟ କେହି ନାହାନ୍ତି। କିଏ ବା ଆଉ ଥାଆନ୍ତା। ସବୁ ଆଗରୁ ବାଟ ସଫା କରି ଚାଲିଯାଇଛନ୍ତି। କେବଳ ଅଛି ସାନ ଚାକର ପିଲାଟିଏ, ଦେହରେ ହାଡ଼ ଦୁଇଖଣ୍ଡି। ବଡ଼କାମକୁ ପାରେ ନାହିଁ। ଅଲଣା, ଲୁଣିଆ କରି ଯାହା ଦୁଇଟା ଫୁଟାଇ ଦେଇ କାମଟା ତୁଲାଇଦିଏ।

ବୃଦ୍ଧ ଘରେ ପହଞ୍ଚି । ଗୋଡ଼ ହାତ ଧୋଇ । ଖଟ ଉପରେ ଦେହଟାକୁ ଲମ୍ବାଇ ଦେଇ ଦୀର୍ଘନିଶ୍ୱାସ ପକାଇଲେ ।

ମଧୁ ଆସି ଖଟ ପାଖରେ ଠିଆ ହୋଇ ଡାକିଲା -ବାବୁ, ଖାଇବାକୁ ବାଢ଼ିବି ?

ହଉ, ବାଢ଼... ବୃଦ୍ଧ ଖାଇ ବସିଲେ, ଦୁଇ ଗୁଣ୍ଡା ଖାଇଛନ୍ତି କି, ନାହଁ ଉଠି ପଡ଼ିଲେ । ରାତିଯାକ ନିଦ ନାହିଁ । ସେହି ଗରୁଡ଼ ଖମ୍ବ ପାଖରେ ବସିଥିବା ନିରିହା ଝିଅର ଡଉଲ ଡାଉଲ ମୁହଁ, ଝାମ୍ପୁଡ଼ିବା ଆଖିଆଗରେ ନାଚିଉଠୁଛି ।

ତାଙ୍କର ଅତୀତକଥା ମନେ ପଡ଼ିଗଲା । ଆଖିରୁ ଟୋପା ଟୋପା ଲୁହ ଝରିପଡ଼ିଲା ତକିଆ ଉପରେ ।

ବୃଦ୍ଧ ଶୋଇଲା ଶେଯରୁ ଉଠି ବାହାର ପିଣ୍ଡାରେ ବସିଲେ ମୁଣ୍ଡରେ ହାତଦେଇ । ଅମାନିଆ ମନଟା ଟିକେ ହେଲେ ବୁଝୁନାହିଁ । ସେ, ଆକାଶକୁ ଚାହିଁଲେ, ପୂର୍ଣ୍ଣିମା ଜହ୍ନରେ ଚାରିଆଡ଼କୁ ଆଲୋକମୟ, ଚାରିଆଡ଼କୁ, ଆଖି ବୁଲାଇଲେ, ନୀଳଚକ୍ର ବାନାଉଡୁଛି । ସେ, ହାତଉଠାଇ ନମସ୍କାର କଲେ ।

ବୃଦ୍ଧଙ୍କର ମନେପଡ଼ିଯାଉଛି ନିଜଝିଅ କଥା । ସେଫାଳିକୁ ସାତବର୍ଷ ହୋଇଥିଲା ମା ତାର ଚାଲିଗଲା ସେପାରିକି । ପାଞ୍ଚବର୍ଷ ପର୍ଯ୍ୟନ୍ତ ଲାଳନ ପାଳନ କରି ତା ମୁହଁକୁ ଚାହିଁ ସବୁ ଦୁଃଖ ପାଶୋରି ଦେଇଥିଲେ । ଏଗାର ପୂରି ବାର ପଶିଲାବେଳକୁ ସେ, ତୋଟି କାଟିଦେଇ ଚାଲିଗଲା ।

ଦେଖିବାକୁ ଗୋଟାକ ଯାକ ମାନିନୀ ପରି । ସେମିତି ଶ୍ୟାମଳବର୍ଣ୍ଣ ଏବଂ ଝାମ୍ପୁଡ଼ାବାଳ, ମୁହଁଟି ଡଉଲ ଡାଉଲ । ଆଉ କଣ ପତିତ ପାବନ ତାଙ୍କ ଦୁଃଖ ସହି ନପାରି ସଙ୍ଖାଳିକି ତାଙ୍କୁ ଫେରାଇ ଦେଲେ । ବୃଦ୍ଧଙ୍କର ମନ୍ ପୁଲକିତ ହୋଇଉଠିଲା ।

ବୃଦ୍ଧ ପିଣ୍ଡା ଉପରୁ ଘର ଭିତରକୁ ଆସି ଦେଖିଲେ ଘର ଭିତରଟି ଅନ୍ଧକାର, ତକିଆ ତଳୁ ଦିଆସିଲିଟି ଆଣି ମହମବତୀଟି ଲଗାଇ ଶେଫାଳିର ଫ୍ରକଥିବା ବାକ୍ସଟିକୁ ଖୋଲିଲେ ।

ଆଜି ସେ ବାକ୍ସ ଖୋଲିବା ପ୍ରଥମ। ଝିଅ ମଲାଦିନଁରୁ ବୃଦ୍ଧ ସେ ବାକ୍ସଟିକୁ ଆଡ଼ଆଖିରେ ଦିନେ ଚାହିଁ ନାହାନ୍ତି । ଆଠ ଦଶଖଣ୍ଡ ଫ୍ରକ ଭିତରୁ ଲାଲ ରଙ୍ଗର ଫ୍ରକଟିକୁ କାଢ଼ି କାଗଜ ଖଣ୍ଡିକ ଭିତରେ ଗୁଡ଼େଇଲେ ଯତ୍ନରେ ।

ତା ଆରଦିନ ସକାଳୁ ବୃଦ୍ଧ ନିଜର ନିତ୍ୟକର୍ମ ସାରି ବାହରିଲେ ଜଗନ୍ନାଥ ମନ୍ଦିର। କାଖରେ ଜାକିଛନ୍ତି କାଗଜ ପୁଡ଼ିଆଟି। ଗରୁଡ଼ ଖମ୍ବ ପାଖରେ ହୋଇଛନ୍ତି, ପାଦ ଆଗକୁ ଚଳିଲା ନାହିଁ । ତାଙ୍କର ଦୃଷ୍ଟି ପଡ଼ିଗଲା ମାନିନୀ ଉପରେ, ସେ ତାଙ୍କ ଆଡ଼କୁ କରୁଣ ଦୃଷ୍ଟିରେ ଚାହିଁଛି । ତାର ଆଖିରୁ ଲୁହ ଗଡ଼ିପଡୁଛି ।

ବୃଦ୍ଧ ମାନିନୀ ପାଖରେ ବସି କହିଲେ, ମା, କାନ୍ଦୁଛୁ କାହିଁକି ? ତୋର ଦେହ କଣ ଭଲ ନାହିଁ । ତା ଦେହରେ ହାତଦେଇ ଚମକି ପଡ଼ିଲେ ଦେହ ତାତିରେ ଖଇ ଫୁଟୁଛି, ତାଙ୍କର ହୃଦୟ ଡାକିଲା ନାହିଁ - ସେହି ପିତୃମାତୃହୀନା ଝିଅଟକୁ ଛାଡ଼ି ଚାଲିଯିବା ପାଇଁ। ତର ତର କରି କାଖରୁ କାଗଜପୁଡ଼ାଟି ଫିଟାଇ ଜାମା ଖଣ୍ଡିକ ତା ହାତକୁ ବଢ଼ାଇ ଦେଇ କହିଲେ - ମା ପିନ୍ଧି, ମୁଁ ତୋର ବୁଢ଼ା ବାପା । ବହୁତ ଦିନରୁ ତତେ ଖୋଜୁଛି, ସେହି ପତିତ ପାବନକୁ ଡାକୁଛି, ଆଜି, (ପତିତପାବନ) ମୋ ଦୁଃଖ ଶୁଣିଛନ୍ତି ସେ ।

ବୃଦ୍ଧଙ୍କର ପେଟ ଭିତରୁ କୋହ ଉଠୁଛି । ଆଖିରୁ ପାଣି ଶୁଖୁନାହିଁ । ଆଖିରୁ ପୋଛି ପକାଇ କହିଲେ, - ମା, ସେଇ ପତିତପାବନଙ୍କୁ ନମସ୍କାର କରି ଆ ଘରକୁ ଯିବା ।

ମାନିନୀ ଚାହୁଁଛି ବୃଦ୍ଧଙ୍କୁ ଏବଂ ସେହି ପତିତ ପାବନ ବାନାକୁ !!

ଆଖିରୁ ବୋହି ଯାଉଛି ଅଜସ୍ର ଲୁହ !!



# ବିଳାସୀମନ

କଟକ ସହର, ଦୋତାଲା ଘର। ଘର ଆଗରେ ବିରାଟ ବଗିଚା। ମାଳି ଲାଗିଛନ୍ତି କାମରେ। ସୁଶାନ୍ତ ବାବୁ ଦାଣ୍ଡରେ ବସିଛନ୍ତି ଆରାମ ଚେୟାର୍‌ରେ। ଚନ୍ଦ୍ରିକା, ଚନ୍ଦ୍ରିକା ?

- ହଁ ବାପା ଯାଉଛି।

ଚନ୍ଦ୍ରିକା ଆସି ସୁଶାନ୍ତ ବାବୁଙ୍କ ପାଖରେ ବସିପଡ଼ି କହିଲା, କାହିଁକି ବାପା ଡାକୁଥିଲ ?

ନାଁରେ, ମା, କହୁଥିଲି ତୋ ବୋଉ ପାଇଁ ମନ ମୋର ଜମା ଭଲ ଲାଗୁନାହିଁ। ସବୁବେଳେ ତାର ଦେହ ଖରାପ ହେଲା। କଣ କରିବା କହ ?ଭଗବାନ ମୋତେ ପଇସାର ଅଭାବ ଦେଇନାହାନ୍ତି। ମାତ୍ର ମନର ଅଭାବ ବହୁତ। ତୋରି ପାଇଁ ଆଜି ଯାହା ବଞ୍ଚିଛି। ପୁଅ, ଝିଅ ଚାରିଟା ଗଲେ, ମା ତୋର ସବୁବେଳେ ରୋଗୀ। ଜୀବନରେ ଏତେବଡ଼ ଇଞ୍ଜିନିଅର୍ ହେଲି। ଏତେ ପଇସା ରୋଜଗାର କରୁଛି। ଭଗବାନ ଯାହାକୁ ଧନ ଦିଅନ୍ତି। ତାକୁ ଜନ ଦିଅନ୍ତି ନାହିଁ। ଏତକ କହି ସେ ଦୀର୍ଘ ନିଶ୍ୱାସ ମାରିଲେ।

ତା ଆରଦିନ ସନ୍ଧ୍ୟା ସାତଘଣ୍ଟା । ଚନ୍ଦ୍ରିକା ତାର ପଢ଼ାରୁମ୍‌ରେ ବସି ପଢୁଛି, ସୁଶାନ୍ତ ବାବୁ ଘର ଭିତରକୁ ପଶିଗଲେ। ଆରେ ମା, ଶୁଣିଲୁଣି ଆମ ଗାଁ ପାଖରେ ନବଘନ ମହାନ୍ତିଙ୍କର ଗୋଟିଏ ବୋଲି ପୁଅ। ଜମିବାଡ଼ି ବିକି ପାଠପଢ଼ାଇଲା ପୁଅଟିକୁ ଏହି କଟକରେ।

ସେ ବର୍ଷ ବିଏ ପାସ କଲା। ଏମ୍.ଏ ପଢ଼ିବ କିପରି । ନବଘନ ମହାନ୍ତିଙ୍କର ଚିନ୍ତା। ସେ କାଲି ଆସିଥିଲେ ମୋ ପାଖକୁ କିଛି ସାହାଯ୍ୟ ପାଇଁ। ମୁଁ ତାଙ୍କୁ କହିଛି ମାସକୁ ମାସ କିଛି ସାହାଯ୍ୟ କରିବି।

ନବଘନ ମହାନ୍ତିଙ୍କର ପୁଅ ନାଁ ମୋହନ। ମୋହନ ଅତି ଶାନ୍ତ, ଶିଷ୍ଟ ଏବଂ ଭଦ୍ର। ବହୁତ ଦୁଃଖରେ ସେ ପାଠପଢ଼ିଛି। ବାପ ତା ଲାଗି ଆଜି

ସର୍ବସ୍ୱାନ୍ତ । ତାର ଚିନ୍ତା ଯେପରି ହେଉ ଟିଉସନ୍ କରି ଏମ୍.ଏ. ପଢ଼ିବାକୁ ହେବ ।

ମୋହନ କଟକରେ ଏମ୍.ଏ. ପଢୁଛି । ସେ ସୁଶାନ୍ତ ବାବୁଙ୍କ ଘରକୁ ମଝିରେ ମଝିରେ ଆସେ । ସୁଶାନ୍ତ ବାବୁ ବହୁତ ଭଲ ପାଆନ୍ତି ତାକୁ । ତାର ବ୍ୟବହାରରେ ସେ ଅତ୍ୟନ୍ତ ସନ୍ତୁଷ୍ଟ । ପଢ଼ିବା ପାଇଁ ସେ ମୋହନକୁ ପଇସା ପତ୍ରରେ ସାହାଯ୍ୟ କରନ୍ତି ।

ଚନ୍ଦ୍ରିକା ତାଙ୍କର ଏକମାତ୍ର ଅଲିଅଳି ଝିଅ । ସେ ଆଇ.ଏ. ପଢୁଛି ।

ଚନ୍ଦ୍ରିକା ସବୁବେଳେ ସୁଶାନ୍ତବାବୁଙ୍କୁ ବ୍ୟସ୍ତ କରେ । ବାପା, ମୋ ପାଇଁ ଗୋଟିଏ ଟିଉସନ୍ ମାଷ୍ଟ୍ର ଠିକ୍ କର ? ପଢ଼ାପଢ଼ିରେ ଭାରି ଅସୁବିଧା ହେଉଛି ।

ମୋହନ ଆସିଥାଏ ସୁଶାନ୍ତ ବାବୁଙ୍କ ଘରକୁ ।

ସୁଶାନ୍ତବାବୁ ସେଦିନ ମୋହନକୁ ଡାକିଲେ । ମୋହନ ଉପର ମହଲାକୁ ଆସ । ତୁମ ସହିତ ମୋର କିଛି କଥାବାର୍ତ୍ତା ଅଛି ।

ମୋହନ ଭୟରେ ଥରି ଉଠିଲା, ସେ, ଆକାଶ, ପାତାଳ ଭାବିବାକୁ ଲାଗିଲା । ସୁଶାନ୍ତ ବାବୁଙ୍କୁ କଣ କହିବ ବୁଝି ପାରୁନଥିଲା । ସେ ଭାବିଲା ସୁଶାନ୍ତବାବୁ ଯାହା ସାହାଯ୍ୟ କରୁଥିଲେ ବୋଧହୁଏ ତାହା ବନ୍ଦ ହୋଇଯିବ ।

ବାପା ତାର ଗରିବ, ଜମିବାଡ଼ି ବିକି ପୁଅକୁ ପାଠ ପଢ଼ାଇଥିଲେ । ପୁଅ ତାଙ୍କର ମଣିଷ ହେବ, ବଂଶର ନାଁ ରଖିବ । ଭଗବାନଙ୍କର ଯେ କଣ ଇଚ୍ଛା ସେ ତାହା ଜାଣନ୍ତି ।

ସୁଶାନ୍ତ ବାବୁ ତାର ମନର ଅବସ୍ଥା ବୋଧହୁଏ ଜାଣିପାରିଲେ । ସେ କହିଲେ - ମୋହନ, ମୁଁ କଣ କହୁଥିଲିକି, ଚନ୍ଦ୍ରିକାକୁ ତୁମେ ଟିଉସନ୍ କରିପାରିବ କି ?

ମୋହନ ମନାକରିବାର ଉପାୟ ନଥିଲା । ସେ କହିଲା- ସାର୍ ଟିଉସନ୍ କଣ କରିବି, ଯେତେବେଳେ ସମୟ ହେଉଥିବ ପଢ଼ାଇ ଦେଇଯିବି ।

ସେହିଦିନଠାରୁ ମୋହନର ଯେତେବେଳେ ସମୟ ହୁଏ ଚନ୍ଦ୍ରିକାକୁ ସେ ପଢ଼ାଇବାକୁ ଆସେ। କ୍ରମେ ଉଭୟଙ୍କ ଭିତରେ ଆକର୍ଷଣ ବଢ଼ିବାକୁ ଲାଗିଲା। ଏଣିକି ମୋହନ ପ୍ରତିଦିନ ଚନ୍ଦ୍ରିକାକୁ ପଢ଼ାଇବାକୁ ଆସେ। ଆସ୍ତେ ଆସ୍ତେ ମୋହନକୁ ଚନ୍ଦ୍ରିକା ଭଲ ପାଇ ବସିଲା।

ସୁଶାନ୍ତବାବୁଙ୍କ ସ୍ତ୍ରୀ - ସୁରମା। ସୁରମା ସବୁବେଳେ ଝିଅ ପାଇଁ ବ୍ୟସ୍ତ। ମନରେ ଭାବନ୍ତି ସବୁବେଳେ ମୋର ଦେହ ଖରାପ ହେଲା। ଆଜି ଯଦି ମୋର କିଛି ହୁଏ ଝିଅକୁ ମୋର କିଏ ଦେଖିବ ?

ସୁରମାଙ୍କ ଦେହ ଖରାପ। ଶୋଇଛନ୍ତି ଆଖିରୁ ତାଙ୍କର ଲୁହ ଗଡ଼ିଚାଲିଛି। ସୁଶାନ୍ତ ବାବୁ ଘର ଭିତରକୁ ପଶିଗଲେ। ତାଙ୍କର ଦୃଷ୍ଟି ପଡ଼ିଗଲା ସୁରମାଙ୍କ ଉପରେ - ସେ କାନ୍ଦୁଛନ୍ତି। ସେ ଯାଇ ପାଖରେ ବସିପଡ଼ି କହିଲେ - ସୁରମା ତୁମେ କାହିଁକି ମନଦୁଃଖ କରି ସବୁବେଳେ କାନ୍ଦୁଛ ?

ସୁରମା ବିରକ୍ତ ହୋଇ ଉଠିଲେ। ମା ହୋଇଥିଲେ ତୁମେ ଜାଣିଥାନ୍ତ। ସବୁବେଳେ ତ ବାହାରେ ବୁଲିଲ, ଝିଅ କଥା କଣ ଭାବୁଛ ? ଆଇ.ଏ ପାସ କରି ବି.ଏ ପଢ଼ିଲା, ତା ସାଙ୍ଗର ଝିଅମାନେ ବିବାହ ହୋଇସାରିଲେଣି। ତା କଥାତ, ଦିନେ ତୁମ ମୁଣ୍ଡରେ ପସିଲା ନାହିଁ ?

ସୁଶାନ୍ତ ବାବୁ ହସି ପକାଇ କହିଲେ - ସୁରମା ଶୁଣ ? ଝିଅ କଣ ବେଶୀ ବଡ଼ ହୋଇଗଲାଣି ? ଝିଅ ମୋର ଏମ୍ଏ ପଢ଼ିବ ତାପରେ ଯାଇଁ ବାହାଘର। ବର୍ତ୍ତମାନ ତା ପାଇଁ ଚିନ୍ତା କରିବା ଦରକାର ନାହିଁ। ଆଜିକାଲି ଝିଅମାନେ ପଢ଼ିବା ଦରକାର।

ସୁରମା, ଆଉ କିଛି କହିଲେ ନାହିଁ ସେ, ଯାଇ ଖଟ ଉପରେ ଶୋଇ ରହିଲେ।

ସୁଶାନ୍ତ ବାବୁ ଖାଇସାରି ଅଫିସକୁ ଚାଲିଗଲେ।

ପୁଝାରି ଆସି ଡାକିଲା - ମା, ଖାଇବ ଆସ ?

ସୁରମା ଉଠି ଖାଇବାକୁ ଗଲେ । ଅଧା ଖାଇଛନ୍ତି ଭାତ ପାଖରୁ ଉଠିଗଲେ ।

ପୁଚ୍ଛାରି କହିଲା - ମା, ଖାଇଲ ନାହିଁ ଉଠିଗଲ ?

ସୁରମା କହିଲେ, ନାଁ ମୁଁ ଖାଇବି ନାହିଁ । ମୋ ଦେହ ଭଲ ଲାଗୁନାହିଁ ।

ମୋହନ ଏମ୍.ଏ ପରୀକ୍ଷା ଦେଇଛି ଆଜି ଫଳ ବାହାରିବ । ଚନ୍ଦ୍ରିକା ଚାହିଁ ବସିଛି ।

ସମାଜବାଲା ଦୁଇଟା ବେଳକୁ ସମାଜ ଦେଇଗଲା । ଚନ୍ଦ୍ରିକା ତର, ତର କରି ସମାଜ ଦେଖିଲା ମୋହନ ଫାଷ୍ଟକ୍ଲାସ ଫାଷ୍ଟ ହୋଇଛି । ତାର ମନ ଆଜି ବହୁତ ଖୁସି । ଆଜି ମୋହନ ଆସିଲେ ଅଭିନନ୍ଦନ ଜଣାଇବ । ଚନ୍ଦ୍ରିକା ବାପାଙ୍କ ପାଖକୁ ଫୋନ୍ କରି ଜଣାଇଲା । ମାଙ୍କୁ ମଧ୍ୟ କହିଲା ।

ସନ୍ଧ୍ୟା ଆଠଟା, ଚନ୍ଦ୍ରିକା ପଢ଼ାଘରେ ବସି ପଢୁଛି ଭିତରୁ କବାଟ ବନ୍ଦ କରି । ମୋହନ ଆସି କବାଟ ଠକ୍ ଠକ୍ କଲା । ସେ ତରତର କରି କବାଟ ଖୋଲିଦେଲା ମୋହନ ଠିଆ ହୋଇଛି ।

- କଙ୍ଗ୍ରାଚୁଲେସନ ।...

ମୋହନ ସୁଶାନ୍ତବାବୁଙ୍କୁ ଏବଂ ସୁରମାଙ୍କ ପାଖକୁ ଯାଇ ନମସ୍କାର କଲା ।

ସୁରମା ତାକୁ ଅତି ଆଦରର ସହିତ ପାଖରେ ବସାଇଲେ ।

ଚନ୍ଦ୍ରିକା ଜଳଖିଆ ନେଇ ପହଞ୍ଚିଲା । ସେ, ମୋହନ ସାଙ୍ଗହୋଇ ଖାଇଲେ ।

ମୋହନ କହିଲା - ଚନ୍ଦ୍ରିକା ମୁଁ କାଲି ଗାଁକୁ ଯାଉଛି । ଚାକିରୀ ଠିକ୍ ହେଲେ ଆସିବି । ସେ, ଗଲାବେଳେ ଚନ୍ଦ୍ରିକା କାନ୍ଦି ପକାଇଲା । ମୋହନ, ତାକୁ ବୁଝାଇ ସୁଝାଇ ହଷ୍ଟେଲକୁ ଆସିଲା ।

ତା ଆରଦିନ ସକାଳୁ ମୋହନ ଗାଁକୁ ଗଲା । ଗାଁରେ ପହଞ୍ଚିଲାବେଳକୁ ସନ୍ଧ୍ୟା ହେଲାଣି ।

ନବଘନ ଚାହିଁ ବସିଛନ୍ତି ପୁଅ ତାଙ୍କର ଆସିବ । ଗାଁ ଯାକ ଆଜି ମୋହନର ପ୍ରଶଂସା । ମୋହନ ଘରେ ଅଛି । ଚନ୍ଦ୍ରିକା ମଝିରେ ମଝିରେ ମୋହନ ପାଖକୁ ଚିଠିଦିଏ ।

ନବଘନ ପୁଅକୁ ବିବାହ କରିବେ ବୋଲି ବେସ୍ତ ହେଲେଣି । ମୋହନ ସବୁ ଶୁଣେ କିଛି କହେ ନାହିଁ ।

ମୋହନ ଦିନେ ତା, ମାଙ୍କ ଆଗରେ କହିଲା, ମା, ବାପାଙ୍କୁ କହ, ବର୍ତ୍ତମାନ ମୁଁ ବିବାହ କରିବି ନାହିଁ ।

ନବଘନ ସବୁ ଶୁଣିଲେ । ପୁଅତ ମନା କରୁଛି । ହଉ, ଚାକିରୀ କରୁ ତାପରେ ଦେଖିବା ?

ସୁରମାଙ୍କ ଦେହ ଖରାପ । ସୁଶାନ୍ତ ବାବୁ ଦାଣ୍ଡପିଣ୍ଡାରେ ବସିଛନ୍ତି । ସ୍ତ୍ରୀଙ୍କ କଥା ମନେପଡ଼ିଗଲା । ନାଁ ଏଥରକ ଚନ୍ଦ୍ରିକା ପାଇଁ କେଉଁଠି ଦେଖିବାକୁ ହେବ ।

ସୁରମା ଶୋଇଛନ୍ତି । ସୁଶାନ୍ତ ବାବୁ ଯାଇ ସ୍ତ୍ରୀଙ୍କ ପାଖରେ ବସପଡ଼ି ମୁଣ୍ଡକୁ ଆଉଁସିବାକୁ ଦେଲେ । ସୁରମା ଶୁଣ ? ଚନ୍ଦ୍ରିକା ପାଇଁ ଏଥରକ ଭଲପାତ୍ରଟିଏ ଦେଖିବା ।

ଚନ୍ଦ୍ରିକା ପଢ଼ାଘରେ ପଢୁଛି । ବାପାଙ୍କ କଥା ତାକୁ ସବୁ ଶୁଭିଯାଉଛି । ସେ ପଢ଼ି ପାରିଲା ନାହିଁ । ମୋହନ କଥା ତାର ମନେପଡ଼ିଗଲା । ଜୀବନଠାରୁ ମୋହନକୁ ମୁଁ ଭଲପାଏ । ତା ଛଡ଼ା ମୁଁ କାହାକୁ ବିବାହ କରିପାରିବି ନାହିଁ । ମୋ ଭାଗ୍ୟରେ ଯାହାଥିବ ତାର ମନ ଅସ୍ଥିର ହୋଇଉଠିଲା ।

ଚନ୍ଦ୍ରିକାର ମାମୁଁ ବଡ଼ ଡାକ୍ତର । ସେ ଆଜି ଆସି ପହଁଚିଛନ୍ତି । ଚନ୍ଦ୍ରିକା ପାଇଁ ଭଲ ଡାକ୍ତର ପିଲାଟିଏ ଠିକ୍ କରିଛନ୍ତି । ପିଲାଟି ଦେଖିବାକୁ ଯେପରି । ଗୁଣ ମଧ୍ୟ ସେହିପରି ।

ଚନ୍ଦ୍ରଶେଖର ବାବୁ କଟକ ବଡ଼ କଣ୍ଟ୍ରାକ୍ଟର ତାଙ୍କରି ପୁଅ । ସୁଶାନ୍ତ ବାବୁଙ୍କ ମନକୁ ପାଇଛି । ସୁରମା ମଧ୍ୟ ଖୁସି । ଚନ୍ଦ୍ରିକା ସବୁ ଶୁଣିଛି । ସେ ମନେ, ମନେ ବି ଠିକ୍ କଲା ମୋହନକୁ ମୁଁ ଶେଷଥର ପାଇଁ ଚିଠିଦେବି ।

ଚନ୍ଦ୍ରିକା ଚିଠି ଲେଖି ବସିଲା । ମୋହନ ଭାଇ ଜାଣିବ ।

ମୁଁ କେବେ ମୋର ମନକଥା ତୁମକୁ ଜଣାଇ ନାହିଁ । କାରଣ ସେ ସୁଯୋଗ ମୁଁ ପାଇନଥିଲି । ତୁମେ ପାସ୍ କରିଗଲ ମୁଁ ତୁମ ଚାକିରୀ ଅପେକ୍ଷାରେ ରହିଲି । ମାଙ୍କ ଦେହ ଖରାପ ଯୋଗୁ ବାପା ଚାହାଁନ୍ତି ମୋତେ ବିବାହ କରିଦବା ପାଇଁ । ବହୁତ ପ୍ରସ୍ତାବ ଆସୁଛି । ମୁଁ ଭଗବାନଙ୍କ ପାଖରେ ଶପଥ କରିଛି ତୁମଛଡ଼ା କାହାକୁ ବିବାହ କରି ପାରିବି ନାହିଁ । ତୁମର କଣ ଇଚ୍ଛା ଚିଠି ଲେଖି ଜଣାଇବ । ରହିଲି । (ଇତି)

ଚନ୍ଦ୍ରିକା

ଆଜି ନବଘନଙ୍କ ମନଖୁସି । ପୁଅ ତାଙ୍କର ଆଇ.ଏ.ଏସ୍ ଇଣ୍ଟରଭିଉ ଦବାକୁ ଯାଇଥିଲା ଫାଷ୍ଟ ହୋଇଛି ।

ମୋହନ ବସିଛି ଦାଣ୍ଡପିଣ୍ଡାରେ ନବଘନ ଚିଠିଖଣ୍ଡିକ ଆଣି ମୋହନକୁ ଦେଲେ ।

ମୋହନ ଚିଠିଟିକୁ ଚିରି ପଢ଼ିବସିଲା । ଚନ୍ଦ୍ରିକା ଚିଠି ଦେଇଛି । କଣ ତା ପାଖକୁ ଲେଖିବ । ତାର ମୁଣ୍ଡ ଘୂରିଗଲା । ଚନ୍ଦ୍ରିକାର କାନ୍ଦିଲା କାନ୍ଦିଲା ମୁହଁ ତା ଆଖି ଆଗରେ ନାଚିଉଠିଲା । ସେ ମନେ ମନେ ଅନୁତାପ କଲା ଚନ୍ଦ୍ରିକା କାହିଁକି ତାକୁ ଆଶା କରିଛି । ସେ ଧନୀର କନ୍ୟା । ମୁଁ ଜଣେ ଦରିଦ୍ରର ପୁଅ । ସିଏ ସିନା କହୁଛି । ସୁଶାନ୍ତ ବାବୁ କଣ ରାଜି ହେବେ ?

ମୋହନ ଚିଠି ଲେଖିବସିଲା ।

ସ୍ନେହର ଚନ୍ଦ୍ରିକା ।

ମୋର ଆଶୀର୍ବାଦ ଜାଣିବ । ଆଜି ତୁମର ଚିଠିଟି ପାଇ ଆଶ୍ଚର୍ଯ୍ୟ ହେଲି । ତୁମେ ଯାହା ଲେଖିଛ । ମୋତେ କେବେ ଦନେ ସୂଚନା ବି ଦେଇନାହଁ ।

ମୁଁ ବି ସେ ଆଶା କରିନାହିଁ । କାରଣ ତୁମେ ବଡ଼ଲୋକର କନ୍ୟା ଏବଂ ତୁମବାପା ଜଣେ ପ୍ରତିଷ୍ଠିତ ବ୍ୟକ୍ତି । ମୁଁ ଜଣେ ଦରିଦ୍ରର ପୁଅ । ଏଥିରେ ତୁମ ବାପା, ମା ରାଜିହେବ କି ? ବାମନ ହୋଇ ମୁଁ ଚନ୍ଦ୍ରକୁ ହାତ ବଢ଼ାଇ ପାରିବି ନାହିଁ । ମୋର ବାପା ହଉଛନ୍ତି ମୁରବି ଯଦି ତୁମ ବାପା ରାଜିଥାନ୍ତି, ବାପାଙ୍କ ପାଖକୁ ଚିଠି ଲେଖିବେ । ତୁମେ ଯଦି ମୋତେ ପାଇ ସୁଖି ହୋଇପାରିବ ମୋର ଆପତ୍ତି ନାହିଁ । ରହିଲି (ଇତି)

ମୋହନ ଭାଇ

ମୋହନ ଚିଠିଟିକୁ ନେଇ ଡାକ ଘରେ ପକାଇ ଦେଲା । ମାତ୍ର ସେ, ଆଜି ଚିନ୍ତାଗ୍ରସ୍ତ କିପରି ବାପାଙ୍କୁ କହିବ, ସେ ମନେ ମନେ ଚିନ୍ତା କଲା । ସୁଶାନ୍ତବାବୁ କଣ କହୁଛନ୍ତି କେଜାଣି ?

ମୋହନର ଆଇ.ଏ.ଏସ୍ ରେଜଲ୍ଟ ବାହାରିଛି । ସେ ପ୍ରଥମ ହୋଇଛି ।

ନବଘନଙ୍କ ମନ ଆଜି ବହୁତ ଖୁସି । ସେ ଠାକୁର ଘରେ ମୁଣ୍ଡିଆଟିଏ ମାରିଲେ ହେ, ପ୍ରଭୁ ତୁମେ ଆଜି ଗରିବର ଗୁହାରି ଶୁଣିଛ । ଆନନ୍ଦରେ ଆଖିରୁ ଦୁଇଠୋପା ଲୁହ ଗଡ଼ିପଡ଼ିଲା ।

ସୁଶାନ୍ତବାବୁ ଖବରକାଗଜ ଖଣ୍ଡିକ ଧରି କରି ଆସି ଡାକପକାଇଲେ, ଆରେ ମା ଶୁଣ ମୋହନ ଆଇ.ଏ.ଏସ୍ ପାଇଛି । ଚନ୍ଦ୍ରିକା ପଢ଼ା ରୁମ୍‌ରେ ବସି ପଢୁଥିଲା । ସେ, ବାପାଙ୍କର ପାଟି ଶୁଣି ଦୌଡ଼ି ଆସିଲା । ବାପା, କାହିଁକି ଡାକୁଥିଲ ? ଦେଖେ କାଗଜ ମୋହନ ଆଇ.ଏ.ଏସ୍ ପାଇଛି ।

ଚନ୍ଦ୍ରିକା ଖବର କାଗଜଟିକୁ ପଢ଼ି ଆନନ୍ଦିତ ହୋଇଗଲା । ତାର ମନ ଅସ୍ଥିର ହୋଇ ଉଠିଲା । ନିଜର ମନକଥା ମାଙ୍କ ଆଗରେ କହିବାକୁ । ମାତ୍ର କିପରି କହିବ ଚିନ୍ତାରେ ପଡ଼ିଲା । ମୋହନ କଥା ଭାବି ଭାବି ଦେହ ତାର ଦିନକୁ ଦିନ ଦୁର୍ବଳ ହୋଇପଡୁଛି ।

ସୁରମା ଝିଅକୁ ଦେଖି ବେସ୍ତ ହୁଅନ୍ତି ।

ସୁଶାନ୍ତବାବୁ ବଗିଚାରେ ବୁଲୁଛନ୍ତି । ସୁରମା ଖାଇ ପହଞ୍ଚି କହିଲେ । ଶୁଣୁଛ ? ଚନ୍ଦ୍ରିକାର କଣ ହୋଇଛି ସବୁବେଳେ ମୁହଁ ଶୁଖାଇ ବସୁଛି । ସେ ଦିନଠାରୁ ତାର ବିବାହ କଥା କହୁଛି ଶୁଣୁନାହଁ ?

ସେ ସ୍ତ୍ରୀଙ୍କ କଥା ସବୁ ଶୁଣି କହିଲେ, ସୁରମା ଶୁଣ ? ତୁମେ ମା, ସବୁ କହୁଛ, ମୁଁ କଣ ଭାବୁନାହିଁ । ଚନ୍ଦ୍ରଶେଖର ବାବୁଙ୍କ ପାଖକୁ ଖବର ଦେବି ତାପରେ ଦିନଠିକ୍ କରିବା ।

ସୁରମା ଚିଡ଼ି ଉଠିଲେ । ତୁମେ, ଚନ୍ଦ୍ରିକାକୁ ପଚାରିଲଣି ଯେଉଁଠି ଠିକ୍ କରୁଛ ?

ନାଁ ତୁମେ ମା ତାକୁ ପଚାର ?

ସୁରମା ସେଠାରୁ ଚାଲିଆସିଲେ ।

ରାତି ଦଶଟା, ଚନ୍ଦ୍ରିକା ଖାଇସାରି ଖଟ ଉପରେ ଶୋଇ ବହି ପଢୁଛି । ସୁରମା ଝିଅ ପାଖରେ ଯାଇ ବସିଲେ । ମା ଗୋଟିଏ କଥା ପଚାରିବି କିଛି ଭାବିବୁ ନାହିଁ । ତୋର ବିବାହ ପାଇଁ ବାପା କେତେଥର କହିଲେଣି ତୋତେ ପଚାରିବା ପାଇଁ । ତୁ ତ ସବୁ ଜାଣିଛୁ ତୋର ମତ କଣ ? ତୁ କାହିଁକି ମୁହଁ ଶୁଖାଇ ବସୁଛୁ ।

ଚନ୍ଦ୍ରିକା କାନ୍ଦି ପକାଇ କହିଲା, ମା ବିବାହ କଥା କିଛି କୁହ ନାହିଁ, ଯଦି ମୋର ମନକଥା ଜାଣିବାକୁ ଚାହଁ ତୁମେ ମୋର ମା, ତୁମରି ଆଗରେ ଭଗବାନଙ୍କୁ ସାକ୍ଷୀ ରଖି କହୁଛି, ମୋହନ ଛଡ଼ା ମୁଁ କାହାକୁ ବିବାହ କରିପାରିବି ନାହିଁ ।

ସୁରମା ମନ ଦୁଃଖରେ ଝିଅ ପାଖରୁ ଚାଲି ଆସିଲେ ।

ମୋହନ ଆସି ପହଞ୍ଚିଛି । ଚନ୍ଦ୍ରିକାକୁ ଦେଖା କରିବ ଏବଂ ସୁଶାନ୍ତ ବାବୁଙ୍କୁ ସୁରମାଙ୍କୁ ଦେଖା କରି ଆଇ.ଏ.ଏସ୍ ଟ୍ରେନିଙ୍ଗେ ଯିବ ।

ବଗିଚାରେ ସୁରମା, ଚନ୍ଦ୍ରିକା ଏବଂ ମୋହନ ବସିଛନ୍ତି । ସୁଶାନ୍ତବାବୁ ହାତରେ ଧରିଛନ୍ତି ଚିଠି ସେଠି ଆସି ପହଞ୍ଚିଗଲେ । ସୁରମା ଶୁଣ ? ଆଜି ଚନ୍ଦ୍ରଶେଖର ବାବୁ ଚିଠି ଦେଇଛନ୍ତି ବିବାହ ଦିନ ଠିକ୍ କରିବାକୁ ।

ଚନ୍ଦ୍ରିକା ସେଠୁ ଉଠି ଚାଲିଗଲା । କଣ ଆଜି ଶୁଣୁଛି । ପଢ଼ା ଘରେ ବସିଛି ତାର ଆଖିରୁ ଲୁହ ଗଡ଼ିଚାଲିଛି ।

ସୁଶାନ୍ତ ବାବୁ, ସୁରମା ଘର ଭିତରକୁ ଗଲେ ।

ମୋହନ ଚନ୍ଦ୍ରିକା ପାଖରେ ବସି ବହୁତ ବୁଝାଇ କହିଲା - ମୁଁ ଯାଉଛି, ଟ୍ରେନିଂରୁ ଫେରିଲେ ଦେଖା । ଭଗବାନଙ୍କର ଯଦି ଇଛା ଥିବ ସବୁ ହବ ।

ଚନ୍ଦ୍ରିକା ଆଖି ଛଳ,ଛଳ କରି କହିଲା, ମୋହନ ଭାଇ ମୋତେ ନିରାଶ କରିବ ନାହିଁ । ମାଙ୍କ ଆଗରେ କହିଛି ତୁମ ଛଡ଼ା ମୁଁ କାହାକୁ ବିବାହ କରି ପାରିବି ନାହିଁ ।

ମୋହନ ନିର୍ବିକାର ପରି ସବୁ ଶୁଣୁଥାଏ ସତରେ ଚନ୍ଦ୍ରିକାକୁ ବାହା ହୋଇପାରିବ - ଭଗବାନ ଭରଷା ।

ଆଉ ଦୁଇମାସ ଅଛି । ମୋହନ ଆସିବ ଟ୍ରେନିଂରୁ ।

ସୁଶାନ୍ତବାବୁ ଚନ୍ଦ୍ରିକାକୁ ପଚାରିଲେ, ମା ତୁ ତ ପିଲାନୋହୁ ଏମ୍.ଏ ପଢ଼ିଲୁଣି ଚନ୍ଦ୍ରଶେଖର ବାବୁ ଦୁଇତିନିଥର ଆସିଲେଣି, ମୁଁ କଣ କହିବି, ତୁ ମୋତେ ଜବାବ୍ ଦେ ?

ଚନ୍ଦ୍ରିକା ସୁଶାନ୍ତବାବୁଙ୍କ ଗୋଡ଼ ତଳେ ପଡ଼ି କାନ୍ଦିବାକୁ ଲାଗିଲା । ବାପା, ମୋତେ ସେ କଥା କୁହ ନାହିଁ, ମୋହନ ଛଡ଼ା ମୁଁ କାହାକୁ ବିବାହ କରିପାରିବି ନାହିଁ । ଯାହା ମୋ ଭାଗ୍ୟରେ ଥିବ ।

ଝିଅ ମନକଥା ଜାଣି ସୁଶାନ୍ତ ବାବୁ ଖୁସିହେଲେ । ସେ ମୋହନର ବାପା ନବଘନ ବାବୁଙ୍କ ପାଖକୁ ଚିଠି ଲେଖିଲେ । ଚନ୍ଦ୍ରିକା ସହ ମୋହନର ବିବାହ ପାଇଁ ସେ ରାଜି !!

ମୋହନ ଟ୍ରେନିଂ ସାରି ଘରକୁ ଆସିଲା । ଆଜି ବିବାହ ଘର । ସୁଶାନ୍ତ ବାବୁଙ୍କ ଘର ବନ୍ଧୁବାନ୍ଧବରେ ପୂର୍ଣ୍ଣ । ବାଜା ହୁଳହୁଳିରେ ଘର କମ୍ପୁଛି । ଚନ୍ଦ୍ରିକାର ଆଶା ସଫଳ ହୋଇଛି ! ଭଗବାନ ତାର ଦୁଃଖ ଶୁଣିଛନ୍ତି... ।

ଚନ୍ଦ୍ରିକା କନ୍ୟାବେଶ ହୋଇ ବସିଛି । ମୋହନ ବରବେଶରେ ଆସି ପହଞ୍ଚିଲା । ସର୍ବଶୁଭରେ ବିବାହ କାମ ସମ୍ପୂର୍ଣ୍ଣ ହେଲା ।...

ରାତି ପାହିଲା ଚନ୍ଦ୍ରିକା ଘରର ମାୟାମମତା ତୁଟାଇ ଶାଶୁ ଘରକୁ ଗଲା ।

ସୁଶାନ୍ତ ବାବୁ, ସୁରମା, କାନ୍ଦୁଛନ୍ତି । ଝିଅ ଜନମ ପର ଘରକୁ !!

ଚନ୍ଦ୍ରିକା ଶାଶୁଘରେ ସମସ୍ତଙ୍କୁ ନିଜର କରିପାରିଛି । ଚନ୍ଦ୍ରିକାର ପ୍ରଶଂସା ଚାରିଆଡ଼େ ।



# ଶେଷ ସ୍ୱପ୍ନ

ନିର୍ଜନ ମରୁଭୂମି । ମରୁଭୂମିର ବାଲିପ୍ରସ୍ତ ଉପରେ ଚାରି ପାଞ୍ଚଟା ତମ୍ବୁ । ତମ୍ବୁଭିତରେ ମିଲଟେରୀ ପୋଷାକ, ବନ୍ଧୁକ, ଗୁଳି ଏବଂ କିଛି ରୁଟି ଓ ପାଣି ।

ସାଙ୍ଗ ସାଥିମାନେ ଶୋଇପଡ଼ିଲେଣି । ମନୁଆକୁ ନିଦ ହେଲା ନାହିଁ । ଜହ୍ନ ପଡ଼ିଛି । ରାତିଟା ଦିନପରି ଦେଖାଯାଉଛି । ବାହାରେ ବସିଛି ମନୁଆ ମୁହଁ ଶୁଖାଇ । ତାର ମନର ସରାଗ ଲିଭି ଯାଉଛି । ରାତି ପାହିଲେ ଯିବଯୁଦ୍ଧ ଭୂଇଁକୁ, ବଞ୍ଚିଲେ ନିଜର ଜନ୍ମମାଟିକୁ ଫେରିଯିବ ? ନଚେତ୍ ଦେଶ ପାଇଁ ପ୍ରାଣ ଦବ । ତାର ଘର କଥା ମନେପଡ଼ି, ଦେହ ଶୀତେଇ ଉଠୁଛି ।

କୁଆ କହିଲା କାଆ ।

ରାତି ପାହିଲା । ଆକାଶରେ ସୂର୍ଯ୍ୟ ଉଠି ଆସୁଛନ୍ତି । ପ୍ରାଚୀନ ଦିଗ୍‌ବଳୟ ସିନ୍ଦୁରିତ ହୋଇ ଉଠିଛି । ଘଣ୍ଟା ବାଜିଉଠିଲା । ସମସ୍ତଙ୍କ ନିଦ ଭାଙ୍ଗିଗଲା । ତରତର ହୋଇ ସମସ୍ତେ କାର୍ଯ୍ୟ ସାରିବାରେ ବ୍ୟସ୍ତ । ଶତ୍ରୁ ପକ୍ଷ କେତେବେଳେ ମାଡ଼ି ଆସିବେ । ତାର ମନ ଅସ୍ଥିର ହୋଇଉଠିଲା ।

ହଠାତ୍ ଗୁଳିଶବ୍ଦର ଆବାଜ୍ ଡୋଡୋ ଶବ୍ଦ । ସମସ୍ତେ ହୁସିଆର । ଚାଲିଲା ଯୁଦ୍ଧ । ଶହ, ଶହ ସୈନ୍ୟ ମଲେ । ରକ୍ତର ସୁଅ ଛୁଟିଛି । କିଏ ମରିଛି, କିଏ ବା ବଞ୍ଚିଛି ତାର ହିସାବ ନାହିଁ । କେତେ ମା, ବାପ, ସ୍ତ୍ରୀ ପୁଅ-ଝିଅ ଚାହିଁ ରହିଥିବେ ଖବର ଟିକକ ପାଇଁ ।

ମିଲ୍‌ଟେରୀ ହସପିଟାଲ୍ - ମନୁଆର ଚେତା ହେଲା । ଚାରିଆଡ଼କୁ ଚାହିଁ ସେ, ଆଶ୍ଚର୍ଯ୍ୟ ହୋଇଗଲା । ହସପିଟଲ୍‌ର କରୁଣ ଚିତ୍କାର ଆଖି ଆଗରେ ନାଚିଉଠିଲା । ଆଖିରୁ ତାର ଗଡ଼ିପଡ଼ିଲା ଲୁହ ଦୁଇଠୋପା !!

ସେ ଉଠିବାକୁ, ଚେଷ୍ଟା କଲା, ମାତ୍ର ଉଠି ପାରିଲା ନାହିଁ । ତାକୁ ଲାଗିଲା ତାର ଗୋଡ଼ ନଥିଲା ପରି । ଚମକି ପଡ଼ିଲା ଦେହତାର ଥରି ଉଠିଲା ।

ସେ ହାତଠାରି ନର୍ସକୁ ଡାକିଲା, ମୋର କଣ, ଗୋଡ଼ ନାହିଁ ?

ହଁ ଅଛି, ଶୋଇପଡ଼।

ମନୁଆର ଗୋଡ଼ନଥିଲା। ଗୁଳିମାଡ଼ରେ ଡାହାଣ ଗୋଡ଼ଟି ନଷ୍ଟ ହୋଇଯାଇଥିଲା।

ମନୁଆ, ହସପିଟାଲ୍ ବେଡ଼ରେ ଶୋଇଛି। ତାର ସବୁକଥା ମନେପଡୁଛି, ଗାଁରୁ ବାପ ଉପରେ ରାଗି ଲୁଚି ପଳାଇ ଆସିଥିଲା, ଆଜକୁ ତିନି ଚାରିବର୍ଷ ହେଲା।

ମନୁଆଟି, ଦଶବର୍ଷ ଦିନୁ ମା, ଛେଉଣ୍ଡ।

ଦାମୋଦରପୁର ଗାଁଟି ନଈକୂଳରେ। ନଈକୂଳିଆ ଜମି ଅଧେ ସମୟ ଧୋଇରେ ଯାଏ। ଥିଲାବାଲା ଘର କାଇପିଇ ବଞ୍ଚନ୍ତି। ନଥିଲାବାଲାଙ୍କ ଦୁଃଖ କହିଲେ ନସରେ। ପେଟରେ ଓଦାକନା ଦେଇ ରହିବା କଥା।

ଜଗୁଟି ଜାତିରେ ଚମାର। ଗାଁ ଲୋକଙ୍କର ଦୁଃଖ ଧନ୍ଦା କରି, ପେଟପାଟଣା ଚଳାଏ। ଘରେ ତାର ମା ନାହିଁ କି, ବାପ ନାହିଁ। ସ୍ତ୍ରୀ ରତନୀ ଦଶବର୍ଷର ପୁଅ ମନୁଆ।

ହଠାତ୍ ରତନି ପଡ଼ିଲା ବାଧକାରେ ପଇସାପତ୍ର ଅଭାବରୁ ଡାକ୍ତର ଦେଖାଇ ପାରିଲା ନାହିଁ। ମାର୍ଗଶିର ମାସ, ଗୁରୁବାର ଦିନ ଭୋରୁ, ରତନୀ ହାତରେ କାଚ, ମୁଣ୍ଡରେ ସୁନ୍ଦୂର ଥାଇ ସେପୁରକୁ ବାଟକାଟିଲା।... ଗାଁରେ, କହିଲେ,ରତନୀ ଚମାରୁଣି ଲକ୍ଷ୍ମୀଟିଏ ଥିଲା।

ଜଗୁ,ଆଖିରୁ ଲୁହ ପୋଛି,ମନୁଆ ମୁହଁକୁ ଚାହିଁ, ଧୈର୍ଯ୍ୟ ଧରି ରହିଲା।

ସ୍ତ୍ରୀ ମଲାଦିନରୁ ଜଗୁ କାମରୁ ଆସି ଗଣ୍ଡାଏ ଫୁଟାଇ କାମଚଳାଏ।

ଗାଁ ଲୋକ, କହିଲେ, ଇରେ, ଜଗୁ ଘରକୁ ଘରଣୀଟିଏ ଆଣ ? ନିତି କଣ ହାତରେ ଫୁଟାଇ ବାପ ପୁଅ ଖାଉଥିବ ?

ଆଜ୍ଞା କଣ କରିବି ? ପୁଅକୁ ଚାହିଁବି ନା, ହାଣ୍ଡିକି ଚାହିଁବି ? କେଉଁ ପାଣି କୁଆଡ଼େ ଯାଉଛି, ଯାଉ ନିହାତି ଅଚଳ ହେଲେ ଦେଖିବା ।

ଏମିତି, ଏମିତି ଦର୍ଶବର୍ଷ ଚାଲିଗଲା । ଜଗୁଆ ବାହାହବା କଥା କାନରେ ପକାଏ ନାହିଁ । ଗାଁ ଲୋକ କହିଲେ ସେ, ଏକାନରେ ପୂରାଇ ସେ କାନରେ ବାହାର କରିଦିଏ । ମନେ, ମନେ କହେ ନା, ନା ଯିଏ ଯାହାକହୁଛି କହୁ, ମୁଁ ଜାଣିଶୁଣି ମା ଛେଉଣ୍ଡ ପିଲାଟିକୁ ହିନସ୍ତା କରିବି ? ତାର ଆଖି ହୋଇଯାଏ ଛଳ ଛଳ ? ସ୍ତ୍ରୀ କଥା ମନେପଡ଼େ ।

ମନୁଆକୁ ଚାହୁଁ, ଚାହୁଁ ଏକୋଇଶି ପୁରି ବାଇଶି ଚାଲିଲା, କୁଟାଖଣ୍ଡିକ, ଦିଖଣ୍ଡ ନାହିଁ ।

ଜଗୁ ଦିନେ, ଦିନେ ପୁଅ ଉପରେ ରାଗି ଉଠି କହେ - ରେ, ମନୁଆ, ଇରେ ମୁଁ ବୁଢ଼ା ହବାକୁ ବସିଲି । ତୁ, ମୋ ସାଙ୍ଗରେ ମିଶି ଗାଁର କିଛି କାମଧନ୍ଦା ଦେଖେ ? ନହେଲେ ବାପ ଚଳିବୁ କେମିତି ? ସବୁଦିନେ କଣ ମୁଁ ବଞ୍ଚିଥିବି ତତେ ପୋଷିବାକୁ ?

ମନୁଆ ନ ଶୁଣିଲା ପରି ଚାଲିଯାଏ ।

ଜଗୁଆ କାମକୁ ପାରୁନାହିଁ । ଗାଁ ଟଣ୍ଡା କଥା । ଧନିସ୍ତଙ୍କ ମନ ନେଇ ଚଳିବାକୁ ପଡ଼ିବ । କାମ ନ କଲେ ଅଚଳ ଖାଇବ କଣ ?

ଗାଁ ବାଲା ମିଶି ଜଗୁକୁ ଜମି ଦୁଇଗୁଣ୍ଠ ଦେଇଛନ୍ତି । ସେଇଥିରୁ ଯାହାପାଏ, ବାପପୁଅଙ୍କର ଛ ମାସ ଖୋରାକି ଚଳିଯାଏ । ଆଉ ଛଅମାସ ଦୁଃଖ କଷ୍ଟରେ ଚଳନ୍ତି ।

ରତନୀ ଥିଲାବେଳେ ତାର ଅଭାବ ନଥିଲା । ରତନୀ ଟୋକେଇ, ବାଉଁଶିଆ, କୁଲା ବୁଣେ । ଜଗୁ ବାହାରେ ବିକି ଦୁଇପଇସା ରୋଜଗାର କରୁଥିଲା । ସିଏ ମଲାଦିନରୁ ସେ, ସବୁ ଯାଇଛି ।

ଏ ବର୍ଷ ବିଲ ସବୁ ପାଟି ଆଁ କରି ରହିଛି ।

ଜଗୁଆ ବିଲ ପାଖରେ ଠିଆ ହୋଇ ଆଖିରୁ ଲୁହଗଡ଼ାଏ । ସ୍ତ୍ରୀ କଥା ତାର ମନେପଡ଼େ ।

ଧାନରୁଆ ଠାରୁ ଓପଡ଼ା ପର୍ଯ୍ୟନ୍ତ ରତନି, ଭାତକଂସାଏ, ଶୁଖୁଆ ଆଣି ପହଞ୍ଚି ପାଖରେ ବସି ଖୁଆଏ । ସେ, ଯାଇଛି ତା ସାଙ୍ଗରେ ତାର ସବୁ ସୁଖ ପୋଡ଼ି ପାଉଁଶ ହୋଇଛି ।

ମନୁଆ ଭାଗ୍ୟରେ ଯାହା ଥିବ ସେ ଭୋଗ କରିବ । ଜନ୍ମ ଦେଇଛି ବୋଲି ମୁଁ ତ ଆଉ କର୍ମ ଦେଇ ନାହିଁ ? ଏତକ ଭାବନାରେ ତା ମନ ବିଚଳିତ ହୋଇଯାଏ ।

ସନ୍ଧ୍ୟାବେଳେ ଗାଁ ମନ୍ଦିରରେ ଆଳତୀ ଚାଲିଛି । ଜଗୁ ଦାଣ୍ଡପିଣ୍ଡାରେ ବସିଛି ହାତଯୋଡ଼ି । ଗାଁର ଅନାଦି ସ୍ୱାଇଁ, ରାମପରିଡ଼ା ଆସି ପହଞ୍ଚିଲେ, ହଇ ହେ, ଚମାର ପୁଅ, ସବୁ ଭଲ ତ ?

ଆଜ୍ଞା ଆଉ ଭଲ କଣ ? ମନୁଆଟା ସକାଶେ ମନ ଭଲ ଲାଗୁନାହିଁ । ମୁଁ ତ ବୁଢ଼ାହେଲି । ସବୁଦିନେ କଣ ପୋଷୁଥିବି?

ଏତେ ବଡ଼ ହେଲାଣି । ନିଜ କଥା ସିନା ନିଜେ ଚିନ୍ତା କରନ୍ତା । ତାରି ମୁହଁକୁ ଚାହିଁ ଚୁଲି ଫୁଙ୍କି, ଫୁଙ୍କି ବୁଢ଼ାହେଲି- ଜନ୍ମ ଦେଇଛି ବୋଲି କର୍ମତ ଦେଇନାହିଁ ।

ବାପ କହିବା କଥା ମନୁଆ ସବୁ ଶୁଣୁଥିଲା । ସେ ମନକୁ, ମନ ଭାବିଲା ବା, ଯାହା କହିଲା, ଠିକ୍ ।

ମୁଁ ଶୁଣୁଛି, କଟକରେ, ସବୁ ମିଲଟେରୀରେ ନାଁ ଦଉଛନ୍ତି। ବା, କୁ କହିଲେ, ସେ ତ ଛାଡ଼ିବ ନାହିଁ। ବା,କୁ ନ କହି ପଳେଇବି। ଶେଷକୁ ମନୁଆ କାହାକୁ କିଛି ନକହି ଘରୁ ବାହାରି ଚାଲିଗଲା । ଆଉ ସେ, ପଛକୁ ଫେରି ଚାହିଁନାହିଁ।...

ଜଗୁ, ମନୁଆକୁ ଖୋଜି ଖୋଜି ବେସ୍ତ ହୋଇପଡ଼ିଲା । ପୁଅକୁ ନ ପାଇ ସେ, ନିରାଶ ହୋଇ ରହିଲା । ମାତ୍ର ଆଖିରୁ ତାର ସବୁବେଳେ ଲୁହଗଡ଼େ । ପୁଅ ଚିନ୍ତାରେ, ଦେହ ତାର କଣ୍ଟା ହୋଇଗଲାଣି । ଯେଉଁଠି ବସେ

ସେଇଠି, ଉଠିବାକୁ ବଳପାଏ ନାହିଁ। ଅଧେ ସମୟ ରାନ୍ଧେ ନାହିଁକି, ଖାଏ ନାହିଁ।

ଗାଁ ଲୋକ କହନ୍ତି, ଚମାର ପୁଅ ଆମେ ବାହା ହବାକୁ କହୁଥିଲୁ ହେଲ ନାହିଁ, ପୁଅକୁ ଚାହିଁ ରହିଲ, ଏବେ ପୁଅ କଣ କଲା - ତୁମକୁ ଚିତା କାଟି ଦେଇ ଚାଲିଗଲା।

କଟା ଘାରେ ଚୁନ ଦେଲା ପରି ଜଗୁ ସବୁ ଶୁଣେ, ମାତ୍ର କିଛି କହେ ନାହିଁ। ମୁଣ୍ଡରେ ହାତମାରେ।

କପାଳ ଲେଖନ, କେ କରିବ ଆନ।

ମନୁଆର ଦେହ ଭଲ ଆଡ଼କୁ ଗତି କରୁଛି। ଡାହାଣ ଗୋଡ଼ରେ, କାଠଗୋଡ଼ ଲଗାଇ ଚାଲିବାକୁ ଅଭ୍ୟାସ କରୁଛି।

ଡାକ୍ତର କହୁଛନ୍ତି ଆଉ କିଛି ଦିନ ପରେ ଚାଲିଯିବାକୁ।

ଡାକ୍ତର ବାବୁଙ୍କ କଥା ଶୁଣି, ମନୁଆର ମନ ଆନନ୍ଦ। ତାର ଆଜି ଗାଁ କଥା, ବା, କଥା ମନେ ପଡ଼ିଯାଉଛି। ସେ, ଭାବୁଛି, ଗାଁକୁ ଯିବି, ଯାହା ଟଙ୍କା ରଖିଛି ବା କୁ ଦେବ ? ବା, କେତେ ଖୁସି ହୋଇଯିବ ?

ଗାଁକୁ ଯିବାଲାଗି ମନତାର ଅସ୍ଥିର ହୋଇ ଉଠିଲା। ସବୁ ତାର ମନେ ପଡ଼ିଯାଉଛି ଗୋଟି ଗୋଟି ହୋଇ ଘର ଆଗର ପ୍ଟିକୁଳି ଗଛ ଏବଂ ନିଜ ହାତରେ ଲଗାଇ ଥିଲା ତରାଟ ଫୁଲ ଗୋଲାପ ଫୁଲ ଗଛ । ସେଥିରେ କେତେପାଣି ଦେଇ ବଞ୍ଚାଇ ଥିଲା କେତେବଡ଼ ହୋଇଯାଇଥିବ। ଗୋଡ଼କୁ ଚାହିଁ ଦେଲେ ତାର ଆଖିରୁ ଗଡ଼ିପଡ଼େ ଲୁହ। ମନର ସରାଗ ଲିଭିଯାଏ।

ଜଗୁ ବୁଢ଼ା ହୋଇ ଗଲାଣି। ଅଣ୍ଟା ତାର ଲଇଁ ପଡ଼ିଲାଣି। ସେଥିରେ ପୁଣି ଶ୍ୱାସ ବେମାର। ଯେତେବେଳେ ରୋଗ ବାହାରେ ସେ, ଠାକୁରଙ୍କୁ ଡାକଦିଏ। ହେ ପ୍ରଭୁ ! ଆଉ ମୁଁ ଏ ଯନ୍ତ୍ରଣା ସହିପାରିବି ନାହିଁ। ମୋତେ ଏଥିରୁ ଉଦ୍ଧାର କର। ମନ ତାର ଅସ୍ଥିର ହୋଇଉଠେ ପୁଅକୁ ଦେଖିବାକୁ।

ମିଲିଟେରୀ ହସପିଟାଲ୍। ଡକ୍ଟର କର୍ଣ୍ଣଲ ସାହେବ। ଓ୍ୟାର୍ଡ ଭିତରକୁ ପଶି ଆସିଲେ। ମନୁଆର ବେଡ଼ ପାଖରେ ଠିଆ ହୋଇ ତା ପିଠିରେ ହାତମାରି ହସି ଦେଇ ତାକୁ ପଚାରିଲେ କଣ ଦେହ ଭଲ ଲାଗୁଛି ତ ?

ହଁ ଆଜ୍ଞା;

ଆଚ୍ଛା କାଲି ତୁମେ, ଏଠାରୁ ଯାଇପାର ?

ଡକ୍ଟର ସାହେବଙ୍କ କଥାଶୁଣି ମନୁଆର ମନ ଆନନ୍ଦ। ରାତି ପାହିଲେ, ସେ ଯିବ। ରାତିଯାକ ନି ନାହିଁ ତାକୁ।

ରାତି ପାହିଲା - ମନୁଆ ତର ତର ହୋଇ ତାର ନିତ୍ୟକର୍ମ୍ୟ ସାରି ଡକ୍ଟର ସାହେବଙ୍କ ଅପେକ୍ଷାରେ ରହିଲା।

ଦିନ ଦଶଟା ଡକ୍ଟର ସାହେବ। ଓ୍ୟାଡ ଭିତରକୁ ଆସି ମନୁଆକୁ ଡିସ୍‌ଚାର୍ଜ କଲେ। ମନୁଆ ଡକ୍ଟର ସାହେବଙ୍କୁ ନମସ୍କାର କଲା। ଡକ୍ଟର ସାହେବ ସାନ୍ତ୍ୱନା ଦେଇ ଚାଲିଗଲେ।

ହସପିଟାଲେରେ ପଡ଼ି ପଡ଼ି, ମନୁଆର ଦେହରେ ହାଡ଼ ଦୁଇଖଣ୍ଡି।

ମନୁଆ ଷ୍ଟେସନରେ ପହଞ୍ଚିଲା ବେଳକୁ ଟ୍ରେନ ପହଞ୍ଚିବା ଉପରେ। ସେ ତର ତର ହୋଇ ଟିକଟ୍ କାଟିଲା।

ଟ୍ରେନ୍ ଆସି ପହଁଞ୍ଚିଥିଲା। ମନୁଆ ବସିଲା। ମନ ତାର ଯେତିକି ଖୁସି ହଉଥାଏ, ଗୋଡ଼ ଲାଗି ଦୁଃଖ ତାର ତିନି ଗୁଣ ବଢ଼ିଯାଏ।

ଟ୍ରେନ ଚାଲିଛି। ମନ ତାର ଭାବନାରେ ଅସ୍ଥିର ହୋଇ ଉଠୁଛି !! ଗାଁକୁ ଯିବି। ବା, ମୋତେ ଦେଖି ଯେତିକି ଖୁସି ହେବ!

ଦୁଇଦିନ ପରେ କଟକରେ ପହଁଞ୍ଚିଲା। କଟକରୁ ଦାମୋଦରପୁର ସାତ ମାଇଲ। ମନୁଆ ବସ୍‌ଷ୍ଟାଣ୍ଡରେ ପହଁଞ୍ଚିଲା ବେଳକୁ ଦିନ ଦୁଇଟା। ସେ, ଚାଲିଛି ଗାଁକୁ। ସେଇ ବାଟେ ଚାଲିଛନ୍ତି ଗାଁ ଲୋକ। କିନ୍ତୁ ତାକୁ କେହି ଚିହ୍ନି ପାରୁନାହାନ୍ତି।

ମନୁଆ ଘର ପାଖରେ ପହଞ୍ଚି ଚମକି ପଡ଼ିଲା । ଘରଭାଙ୍ଗି ପଡ଼ିଛି । ଘର ଆଗରେ ପିଜୁଳି ଗଛ ନାହିଁ । ତାର ଅତି ପ୍ରିୟ ତରାଟ ଗଛ । ଗୋଲାପ ଗଛ ନାହିଁ । ଚାରିଆଡ଼କୁ ଚାହିଁଲା , କାହିଁ ? ବା , ତ ଦେଖା ଯାଉନାହିଁ ?

ତାର ମନ ଅସ୍ଥିର ହୋଇଉଠିଲା । ସେ ଭଙ୍ଗା ପିଣ୍ଡା ଉପରେ ମୁଣ୍ଡରେ ହାତ ଦେଇ ବସିପଡ଼ିଲା ।

ଅନାଦି ସ୍ୱାଇଁ, ସେ ବାଟେ ଯାଉଥିଲେ । ସେ, ଦେଖିଲେ ଜଗୁଆ ପିଣ୍ଡାରେ କିଏ ବସିଛି । ତା ପାଖକୁ ଯାଇ ପଚାରିଗଲ - କିରେ ତୁ କିଏ ?

- ଅଜା ଚିହ୍ନି ପାରୁନାହଁ । ମୁଁ ପରା , ମନୁଆ ?

- ଆରେ । ତୁ, କେତେବେଳେ ଆସିଲୁ ?

- ଆଜ୍ଞା ଏଇନାତ ପହଞ୍ଚିଲି । ଅଜା ବା , କାହିଁ ?

- ଆହାଃ ଆଉ କଣ ତୋ ବା ଅଛି ?

- ବା ନାହିଁ... ?

ମନୁଆ ଆଉ କାନ୍ଦି ପାରିଲା ନାହିଁ !!!



# ଆତ୍ମାହୁତି

ନଈ ଏକୂଳ ସେ କୂଳ ଖାଉଛି । ନଈ ବନ୍ଧ ଉପରେ ରସାନନ୍ଦ ବସିଛି ଆକାଶକୁ ଚାହିଁ । ଚଲା ବାଦଲ ଗୁଡ଼ାକ ନାଚି ନାଚି ଚାଲିଛନ୍ତି । ସୂର୍ଯ୍ୟଅସ୍ତ ଥିବା ଉପରେ । ଡାହାଣିଆ ଖରାଟା ପଡ଼ି ତାର ସୁନେଲି ରଙ୍ଗର କିରଣ ନଈ ଉପରେ ବିଛାଡ଼ି ଦେଇଛି । ତାରା ଗୋଟାଏ, ଗୋଟାଏ ଫୁଲ ଫୁଟିଲା ପରି ଫୁଟୁ ଉଠୁଛନ୍ତି । ତାର ମନରେ ଆଜି ଅଗ୍ନିଶିଖା ପରି ନିଆଁ ହୁ, ହୁ ହୋଇ ଜଳି ଉଠୁଛି । ମୁଣ୍ଡଟା ତାର ଭାରାକ୍ରାନ୍ତ । ଦେହଟା ଜୀବନ ନଥିଲା ପରି ଅନୁଭବ କରୁଛି ।

ରସାନନ୍ଦ ଘରେ ପହଞ୍ଚିଲା ବେଳକୁ ରାତି ଆଠଟା ।

- ଅଞ୍ଜଳୀ - ଅଞ୍ଜଳୀ ?

ଧୋବି କହିଲା ଆଜ୍ଞା ଯାଉଛି ? କିରେ ଧୋବୀ ମା କାହାନ୍ତି ?

ଆଜ୍ଞା ମା ନାହାନ୍ତି ।

କୁଆଡ଼େ ଯାଇଛନ୍ତି ?

ଜଣେ ବାବୁ ଆସିଥିଲା ତାଙ୍କ ସାଙ୍ଗରେ ଯାଇଛନ୍ତି ।

ସେ ବାବୁ କିଏ ଜାଣିଛୁ ?

ଆଜ୍ଞା ମୁଁ କେମିତି ଜାଣିବି ? ସେ ବାବୁ ନିତି ଆସନ୍ତି, ମା ତାଙ୍କ ସାଙ୍ଗରେ ବାହାରକୁ ଯାଆନ୍ତି ।

ତାଙ୍କ ନାଁ କଣ ଜାଣିଛୁ ?

ହଁ ମା ଡାକନ୍ତି ସୁରେଶ ବାବୁ ।

ରସାନନ୍ଦ ଆଉ କିଛି ନକହି ଡ୍ରଇଁ ରୁମ୍‌ର ସୋଫା ଉପରେ ବସିଲା ପତ୍ରିକା ଖଣ୍ଡେ ଧରି । ମନେ ମନେ ଭାବିଲା ମୁଁ ଯାହା ସନ୍ଦେହ କରୁଥିଲି ତାହେଲେ କଣ ସତ ?

ଗେଟ୍ ଖୋଲା ହେବାର ଶବ୍ଦ । ରସାନନ୍ଦ ବାହାରକୁ ଚାହିଁଲା । ତାର ଦୃଷ୍ଟି ପଡ଼ିଗଲା ରେକ୍ସାଟା ଗେଟ୍ ଭିତରକୁ ପଶିଆସୁଛି। ଭାବିଲା ବୋଧହୁଏ ଅଞ୍ଜଳି ଫେରିଲା । ସେ ସୋଫା ଉପରୁ ଉଠିପଡ଼ି ଘରର ଏପାଖ ସେପାଖ ବୁଲିବାକୁ ଲାଗିଲା ।

ଲାଲ୍ ରଙ୍ଗର ଶାଢ଼ୀ। ଧଳାର ବ୍ଲାଉଜ ପିନ୍ଧିଛି ଅଞ୍ଜଳୀ। ଘର ଭିତରକୁ ପଶି ଆସିଲା ହସି ହସି । କଣ ଖାଇଲଣି ? ସେ ହସରେ ନଥିଲା ମାଧୁର୍ଯ୍ୟ- ରସାନନ୍ଦ ନିରୁତ୍ତର ।

ଆରେ, କଣ ରାଗିଛ ନାଁ କଣ ?

ରସାନନ୍ଦ ଗର୍ଜି ଉଠିଲା, ଅଞ୍ଜଳୀ ତୁମେ ଜଣେ ଭଦ୍ରଲୋକର ବୋହୂ ହୋଇ ସ୍ୱାମୀର ବିନାଅନୁମତିରେ କୁଆଡ଼େ ଯାଇଥିଲ ?

ମଲା ଯୁଆଡ଼େ ଯିବି କଣ ତୁମକୁ କହି କରି ?

ରସାନନ୍ଦ (ତାଚ୍ଛଲ୍ୟ କରି) କହିଲା, ମୋତେ କାହିଁକି କହିକରି ଯିବ ? ତୁମ ମନଇଛା ଯାହାନାହିଁ ତାହା କରିବ? ଆଉ ଦିନେ ଏଘରୁ ଗୋଡ଼ କାଢ଼ି ପାରିବ ନାହିଁ ।

ଅଞ୍ଜଳି କହିଲା ସବୁଠାରେ ଓକିଲାତି କଲେ କଣ ଚଳିବ ?

ଅଞ୍ଜଳିର କଥାଗୁଡ଼ାକ ରସାନନ୍ଦକୁ ଯେପରି ଲାଗିଲା ଛୁଞ୍ଚି ଫୋଡ଼ିଲା ପରି । ରାଗରେ ମୁହଁ ତାର ଲାଲ ।

- ଆଜ୍ଞା ଟେବୁଲ୍ ଉପରେ ବଢ଼ାହୋଇଛି - ଆସନ୍ତୁ ଖାଇବେ ? ଧୋବୀ କହିଲା !!

ରସାନନ୍ଦ, ଅଞ୍ଜଳୀ ଖାଇ ବସିଲେ। ରସାନନ୍ଦ ଅଳ୍ପ ଖାଇ ଉଠିପଡ଼ିଲା ।

ଅଞ୍ଜଳୀ ସ୍ୱାମୀର ହାତକୁ ଧରି ପକାଇ କହିଲା, ତୁମେ ଖାଇନା ହଁ ଉଠିପଡୁଛ କଣ ?...

ସେ ଅଞ୍ଜଳୀର ହାତକୁ ଛିଆଡ଼ି ଦେଇ ଶୋଇବା ଘରକୁ ଯାଇ ଖଟର ସେ ପଟକୁ ମୁହଁ ବୁଲାଇ ଶୋଇଲା ।

ଅଞ୍ଜଳୀର ମନ ଆଜି ସ୍ୱାମୀଙ୍କ କଥାରେ ଜଳି ଉଠୁଛି । ମନେ, ମନେ ଭାବିଲା ମୁଁ ସ୍ୱାଧିନ ହବାକୁ ଚାହେଁ । ପଞ୍ଜୁରି ଭିତରେ ପକ୍ଷୀ ପଶି ରହିଲା ପରି ମୁଁ ଏଘରେ ଆବଦ୍ଧ ହୋଇ ରହିପାରିବି ନାହିଁ । ସେ ଲାଇଟ୍ ଲିଭାଇ ଶୋଇବାକୁ ଗଲା ।

ରସାନନ୍ଦକୁ ରାତିଯାକ ନିଦ ନାହିଁ । ସେ ଦୁଶ୍ଚିନ୍ତାଗ୍ରସ୍ତ । ମନ ଛଟପଟ ହଉଛି । ଭାବୁଛି ରାତି ପାହୁଁ ଅଞ୍ଜଳୀକି, ପଚାରିବି, ସୁରେଶ କିଏ, ପ୍ରତିଦିନ ତା ସାଙ୍ଗରେ କୁଆଡ଼େ ଯାଉଛି ।.....

ସକାଳ ଦଶଟା, ରସାନନ୍ଦ ଡ୍ରଇଁ ରୁମ୍‌ରେ ବସି ମାଗାଜିନ୍ ଏପଟ ସେପଟ କରୁଛି ।

ଅଞ୍ଜଳୀ ଗାଧୋଇ ଆସି ଡ୍ରେସିଂ ଟେବୁଲ୍ ପାଖରେ ମୁଣ୍ଡ କୁଣ୍ଡାଇ ଗୀତ ଗାଉଛି ।

- ଧୋବିରେ ଧୋବି ?

- ମା କାହିଁ ଡାକୁଛ ?

- ମୁଁ ଆଜି ବାହାରକୁ ଯାଉଛି, ତୁ ରନ୍ଧାବଢ଼ା କରି ରଖିଥିବୁ । ଆସୁ ଆସୁ ଟିକେ ଡେରି ହେବ ।...

- ହଉ ମା ?

ରସାନନ୍ଦକୁ ଶୁଭିଗଲା ଅଞ୍ଜଳୀର ଅର୍ଡର । ସେ ରାଗରେ ଡ୍ରଇଁ ରୁମ୍‌ରୁ ଉଠି ଆସିଲା । ଅଞ୍ଜଳୀ-ଅଞ୍ଜଳୀ ?

- କାହିଁ ଡାକୁଛ ?

- କୁଆଡ଼େ ଯାଉଛ ?

- ମୋର ବାହାରେ ଟିକେ କାମ ଅଛି ।

- ନାଁ ଯାଇପାରିବ ନାହିଁ । ମୁଁ ସବୁଜାଣେ ସୁରେଶ କିଏ ?

- ସୁରେଶ ମୋର କ୍ଲାସ ମେଟ୍ ।

- ତୁମେ ଜଣେ ବିବାହିତା ନାରୀ ଅଲଗା ପୁରୁଷ ସାଙ୍ଗରେ ଯିବାକୁ ଲଜ୍ଜାବୋଧ ହେଉ ନାହିଁ । ମୋର ତ, ପୁଣି ମାନ ସମ୍ମାନ ଅଛି ?

- ମୁଁ କଣ କଲି ଯେ ଲଜ୍ଜା ହେବ । ମୁଁ ଏଘରେ ପଶୁ, ପକ୍ଷୀ ପରି ଆବଦ୍ଧ ହୋଇ ରହିବାକୁ ଚାହେଁ ନାହିଁ । ଯେତେହେଲେ ମୋର ସ୍ୱାଧିନତା ଅଛି ଏତକ କହି ଅଞ୍ଜଳୀ ବାହାରକୁ ଚାଲିଗଲା ।

ରସାନନ୍ଦ ରାଗରେ ଜର୍ଜରିତ । ହାତରେ ଧରିଥିବା ମ୍ୟାଗାଜିନ୍‌କୁ ଡ୍ରଇଁ ରୁମ୍ ଟେବୁଲ ଉପରେ ଫୋପାଡ଼ି ଦେଇ ବସି ପଡ଼ିଲା । ମନେ ମନେ ଅନୁତପ୍ତ, ମୁଁ ଅଞ୍ଜଳୀକୁ ଯେଉଁ ଆଶାରେ ବିବାହ କରିଥିଲି ସେ ଆଶା ମୋର ଧୂଳିସାତ୍ ହୋଇଗଲା । ଅଞ୍ଜଳୀ ଶିକ୍ଷିତା ବୋଲି ତାର କମ୍ ଗର୍ବ ଅହଙ୍କାର ନୁହେଁ । ମୁଁ ଭୁଲ୍ କରିଛି, ବିଷବୃକ୍ଷକୁ ମୋର ହୃଦୟର ପଦ୍ମ ତଳେ ସ୍ଥାନଦେଇ । ସେଥିପାଇଁ ନିଜେ ଦାୟୀ ।

ଅଞ୍ଜଳୀ ହାତରେ ଧରିଛି କେତୋଟି ପୁଡ଼ା । ଘର ଭିତରକୁ ପଶି ଆସିଲା ।

ରସାନନ୍ଦ ପଚାରିଲା - ସେସବୁ କଣ ?

- ଆମ ଘରେ ଆଜି ସନ୍ଧ୍ୟା ଛଅଟା ବେଳେ ଗୋଟିଏ ଛୋଟ ପାର୍ଟିଟିଏ ହବ ।

- ଓଃ ପାର୍ଟି ! ଏଗୁଡ଼ାକ ମୋତେ ଆଦୌ ଭଲ ଲାଗେ ନାହିଁ ।

- ତୁମେ ଓକିଲ ଲୋକ, କାଗଜ କଲମ ଗାରଉ ଗାରଉ ବେଳଯାଉଛି । ପାର୍ଟି କ୍ଲବର ମର୍ଯ୍ୟାଦା ଜାଣିବ କେଉଁଠୁ ?

ରସାନନ୍ଦ ହସି, ହସି ଗଡ଼ିଗଲା । ମାତ୍ର ସେ ହସରେ ନଥିଲା ଅଞ୍ଜଳୀ ପ୍ରତି ଦରଦ । କେବଳ ଥିଲା ନିର୍ଯ୍ୟାତନା ଏବଂ ଲାଞ୍ଛନା ।

ଅଞ୍ଜଳି ନିଜକୁ ସଜେଇ ବନ୍ଧୁମାନଙ୍କୁ ଅପେକ୍ଷା କରିଛି ଗାର୍ଡନ୍ ଭିତରେ ।

ଗେଟ୍ ଭିତର ଦେଇ ପଶିଆସିଲା କାରଟା । ସୁରେଶ୍, ଅନିଲ୍, ଦେବବ୍ରତ କାରରୁ ଓହ୍ଲାଇ ପଡ଼ିଲେ, - ହାଲୋ, ଅଞ୍ଜଳୀ ଦେବୀ, ଆଜିକାର ଏହି ପାର୍ଟିରେ ଆଉ କିଏ ଆସୁଛନ୍ତି ?

-ମୁଁ ଖୁସିରେ ସହପାଠିମାନଙ୍କୁ ଡାକିଛି ।

- ରସାନନ୍ଦ ବାବୁ କାହାନ୍ତି ?

- ମୁଁ ଜାଣେ ନାହିଁ ।

ଏକଥା ଗୁଡ଼ାକ ରସାନନ୍ଦକୁ ସବୁ ଶୁଭୁଥିଲା ।

ଖିଆ ପିଆ ସବୁ ସରିଲା । ଯେଯୁଆଡ଼େ ଗଲେ । ସୁରେଶ କହିଦେଇ ଗଲା ମୁଁ କାଲି ଅପେକ୍ଷା କରିଥିବି କ୍ଲବରେ । ଆସିବ ?

ଅଞ୍ଜଳୀର ଢଙ୍ଗଢାଙ୍ଗ ଦିନକୁ ଦିନ ରସାନନ୍ଦ ପକ୍ଷରେ ଚଳିବା ଅସମ୍ଭବ ହୋଇ ଉଠୁଛି । ସେ, ମନେ ମନେ ଅନୁତାପ କରୁଛି । ବାପା, ତାର କେତେ ଅନୁନୟ, ବିନୟ ହୋଇ କହିଥିଲେ ସେହି ଅଶିକ୍ଷିତା, ସରଳା, ନିରିହ ଝିଅ ଅନୁପମା ପାଇଁ । କିନ୍ତୁ ମୁଁ ତାଙ୍କର ଆଦେଶକୁ ଲଙ୍ଘନ କରିଥିଲି । ବର୍ତ୍ତମାନ ମୋର ପ୍ରାୟଶ୍ଚିତ ମୁଁ ଭୋଗୁଛି ।

ରାତିରେ ତାକୁ ନିଦ ହେଲାନାହିଁ । ସୁରେଶ୍ ପ୍ରତି ଆସିଲା ହିଂସା ।

ତା ଆରଦିନ ସନ୍ଧ୍ୟା ସାତଟା, ଅଞ୍ଜଳୀ ଯାଉଛି କ୍ଲବକୁ ।

ରସାନନ୍ଦ କାନ୍ଥର ଘଣ୍ଟାକୁ ଚାହିଁଲା ରାତି ବାରଟା ? ତାର ମନ ଅସ୍ଥିର ହୋଇ ଉଠିଲା, ଅଞ୍ଜଳୀ କୁଆଡ଼େ ଗଲା କେତେବେଳେ ଆସିବ ।

ଘଡ଼ଘଡ଼ିର ଆବାଜ୍ । ବର୍ଷା , ପବନ , ଅମାବାସ୍ୟାର ଅନ୍ଧାର ମୁହଁକୁ ମୁହଁ ଦେଖାଯାଉନାହିଁ । କଟକ ସହର ରାସ୍ତା ନିସ୍ତବ୍ଧ ।

ସଦାନନ୍ଦ ବେଡ୍‌ରୁମ୍‌ର୍ ଖଟ ଉପରେ ବସି ଝରକା ବାଟେ ବାହାରକୁ ଚାହିଁଛି ।

ଗେଟ୍ ଖୋଲାହେବାର ଶବ୍ଦ । ସେ ତକିଆତଳୁ ଟର୍ଚ୍ଚଲାଇଟ୍ ଆଣି ଟିପିଦେଲା । ତାର ଦୃଷ୍ଟି ପଡ଼ିଗଲା ସୁରେଶ୍ ତାର ବାହୁବନ୍ଧନ ଭିତରେ ଅଞ୍ଜଳୀକୁ ନେଇ ଆସୁଛି ।

ସେ ଆଉ ନିଜକୁ ସମ୍ଭାଳି ପାରିଲା ନାହିଁ । ରିଭଲ୍‌ଭଲ୍‌ଟା ନେଇ ଦାଣ୍ଡ ଘର ଭିତରକୁ ପଶିଗଲା । ଆଗରେ ସୁରେଶ୍ । ହଠାତ୍ ରିଭଲ୍‌ଭଲ୍‌ଟା ଫୁଟିଲା । ସୁରେଶ ତଳେ ଲୋଟିପଡ଼ିଲା ।

ରସାନନ୍ଦ ଦୌଡ଼ିଯାଇ ବେଡ୍‌ରୁମର୍ ଭିତରୁ କବାଟ ବନ୍ଦ କରିଦେଲା । ଭିତରୁ ଶୁଭିଲା ଗୁଳିର ଆବାଜ୍ ।



# ଅଗ୍ନିପରୀକ୍ଷା

ଶୀତଦିନ, ରାତି ବାରଟା, ସୁରଭି ଖଟର ବାଡ଼ ଉପରେ କହୁଣିଭରା ଦେଇବସିଛି । ମୁଣ୍ଡର ବାଳଗୁଡ଼ିକ ଫୁରୁଫୁରୁ ହୋଇ ଉଡୁଛି ।

ଟୁବୁ ବୁବୁ ଓ କୁନା ଆରଘରେ ଶୋଇଛନ୍ତି ।

ସୁରଭି ତିନୋଟି ଯାକ ପିଲାଙ୍କୁ ଘୋଡ଼ାଇ ଦେଇ ଆସି, ତାର ଶୋଇବା ଗର ଖଟ ଉପରେ ବସିଲା ।

ସୁରଭି କାନ୍ଥରେ ଟଙ୍ଗା ହୋଇଥିବା ଘଣ୍ଟାକୁ ଚାହିଁଲା । ରାତି ଦୁଇଟା ବାଜିଲାଣି । ଏପର୍ଯ୍ୟନ୍ତ ସ୍ୱାମୀ ଆସି ନାହାନ୍ତି । ସେ ଖଟ ଉପରେ ଟିକେ ଘୁମାଇ ପଡ଼ିଲା ।

ଗାଡ଼ିର ଶବ୍ଦହେଲା ।

ସୁରଭି, ଝରକାର, ରେଲିଂବାଟେ ଚାହିଁଲା, କାହିଁ, କେହି ତ, ଦେଖାଯାଉ ନାହାଁନ୍ତି ?

କବାଟ ଠକ୍ ଠକ୍ ।

- କିଏ ।

-କିଛି ଉତ୍ତର ନାହିଁ ।

ସୁରଭିର ସାହସ ହେଲା ନାହିଁ ନିଜେ କବାଟ ଫିଟାଇ ଦବାକୁ । ସେ, ପିଅନକୁ ଡାକ ପକାଇଲା ।

ହରିଆ ନିଦ ମଳ, ମଳ ହୋଇ କହିଲା, ମା କାହିଁ ଡାକୁଛ ? ପୁଣି ବାହାରୁ ପାଟି ଶୁଭିଲା, ମେମ୍ ସାହେବ, କବାଟ ଫିଟାନ୍ତୁ ବାବୁଆସିଲେ ।

ଡ୍ରାଇଭର୍ ପାଟି ଶୁଣି ହରିଆ କବାଟ ଖୋଲି ଦେଲା ।

ସୁରଭି ଦାଣ୍ଡପିଣ୍ଡାକୁ ଯାଇ କହିଲା, ଶଙ୍କର, ସାହେବ କାହାନ୍ତି ?

- ଆଜ୍ଞା ସାହେବ ଗାଡ଼ି ଭିତରୁ ଓହ୍ଲାଇ ପାରୁ ନାହାନ୍ତି ।

ସୁରଭିର ମୁଣ୍ଡ ଭିତର ଘୂରିଗଲା । ସେ ମନେ ମନେ ଭାବିଲା, ଯାହା ମୁଁ ସନ୍ଦେହ କରୁଥିଲି ତା, କଣ ସତ ?

ହରିଆ, ଶଙ୍କର, ଦୁହେଁ ମିଶି ସୁମନ୍ତକୁ ଧରି ଆଣି ଖଟ ଉପରେ ଶୋଇଦେଲେ ।

ସୁରଭି ସ୍ୱାମୀର ଗୋଡ଼ରୁ ଯୋତା କାଢ଼ି ଦେଇ ପାଖରେ ବସିଲା । ମାତ୍ର ସେ, ଚିନ୍ତାରେ ଶୋଇ ପାରିଲା ନାହିଁ ।

ସୁମନ୍ତ ଧନୀ ଘରର ପିଲା । ପାଠପଢ଼ାରେ ସେ, ସୁନାମ ଅର୍ଜନ କରିଥିଲା । ସେ ଯେତେବେଳେ ଆଇ.ଏ.ଏସ୍ ପାଇଲା, ବାପା ତାର ଆନନ୍ଦରେ କୁଣ୍ଡାଇ ପକାଇଥିଲେ ।

ପୁଅର ଏ ଅବସ୍ଥା ଦେଖିବାକୁ ବୀରବାବୁ କି ତାଙ୍କ ସ୍ତ୍ରୀ ନାହାନ୍ତି ।

ବୀରବାବୁ ମରିବା ତିନିବର୍ଷ । ସ୍ୱାମୀ ମରିବାର ବର୍ଷକରେ ସୁମନ୍ତର ମା ଚାଲିଗଲେ ।

ସୁମନ୍ତ କଲେକ୍ଟର ।

ସୁରଭିକୁ ପାହାନ୍ତି ପହରକୁ ନିଦ ଲାଗିଯାଇଛି । ସକାଳ ଆଠଟା, ସୁମନ୍ତର ନିଦ ଭାଙ୍ଗିଗଲା, ସେ, ସୁରଭିକୁ ହଲେଇ ଦେଲା । ଉଠ । ଆଜି କଣ, ଶୋଇଥିବ ?

ସୁରଭିର ନିଦ ଭାଙ୍ଗିଗଲା । ସେ ଚମକି ପଡ଼ି ଚାହିଁ ଦେଲା । ସାମନାରେ ସ୍ୱାମୀ ତାର ଠିଆ ହୋଇଛନ୍ତି । ଆଖିଗୁଡ଼ାକ ରକ୍ତ ପରି ଲାଲ । ତାକୁ ଅନ୍ଧକାର ଦେଖାଗଲା । ଆଖି ତାର ଲୁହରେ ଟଳମଟଳ ।

ସୁମନ୍ତ ଅଫିସକୁ ଯିବ ବୋଲି ଖାଇ ବସିଛି, ସୁରଭି ପଚାରିଲା - ପ୍ରତିଦିନ ତୁମେ ଏତେ ରାତି ପର୍ଯ୍ୟନ୍ତ କୁଆଡ଼େ ଯାଉଛ ?

- କାହିଁକି ?

- କାହିଁକି କଣ । ମୁଁ ପଚାରୁଛି ଏତେ ବଡ଼ ଶୀତରେ ଏତେ ରାତି ପର୍ଯ୍ୟନ୍ତ କେଉଁଠି ରହୁଛ ?

- ମୁଁ ଯୁଆଡ଼େ ରହିଲି, ତୁମର ପଚାରିବାର କଣ ଦରକାର ?

- କଣ ଦରକାର ? ମୁଁ ଯାହା ଭାବୁଥିଲି ତା କାଲି ରାତିରେ ଆଖିରେ ଦେଖିଲି । ମୋତେ ତୁମେ କଣ ଲୁଚାଇବ । ମଦଖାଇ ରାତି ଦୁଇ ତିନିବେଳେ ଘରକୁ ଆସିବ ? ଏଡ଼େବଡ଼ ପରିବାରରେ ଜନ୍ମ ହୋଇଥିଲ । ଏଡ଼େ ବଡ଼ ପରିବାରର ଯୋଇଁ ହୋଇଥିଲ । ଏତେ ପାଠ ପଢ଼ି କୃତିତ୍ୱ ଅର୍ଜନ କରିଥିଲ, ନିଜର ମାନ ସମ୍ମାନ ରଖି ଜାଣୁନାହଁ ?

ବାପ ଯଦି ଏକଥା କରିବେ ପିଲାମାନେ କଣ ଶିଖିବେ ।

ସୁରଭିର କଥାଗୁଡ଼ାକ ସୁମନ୍ତକୁ ବିଷ ପରି ଲାଗିଲା । ରାଗରେ ମୁହଁ ତାର ଲାଲ । ସେ ସୁରଭିକୁ ଘୋଷାରି ଆଣି ତା ଗାଲରେ ଠୋ କରି ଚାପୁଡ଼ାଟାଏ ମାରି ଅଫିସକୁ ଚାଲିଗଲା ।

ସୁରଭି ମୁଣ୍ଡରେ ହାତ ଦେଇ ତଳେ ଲଥକିନା ବସିପଡ଼ି କଇଁ କଇଁ ହୋଇ କାନ୍ଦି ଉଠିଲା ।

ଟୁବୁ, ବୁବୁ, କୁନା ଡାକପକାଇଲେ ମମି ଖାଇବାକୁ ଦିଅ ।

ହରିଆ ଡାଇନିଂ ଟେବୁଲ୍ ଉପରେ ଖାଇବାକୁ ବାଢ଼ି ଦେଇ ଚାଲିଗଲା ।

ପିଲାମାନେ ଖାଇବସିଲେ, ସୁରଭି ତାଙ୍କ ପାଖରେ ବସିଛି । ଟୁବୁ, ବୁବୁ କହିଲେ, ମମି ତୁମେ କାହିଁକି କାନ୍ଦୁଥିଲ ? ଡାଡି ତୁମକୁ କଣ ଗାଳିଦେଲେ ?

ନାଁ । ପିଲାମାନେ ଖାଇଦେଇ ସ୍କୁଲକୁ ଚାଲିଗଲେ ।

ଆଜି ପହିଲା । ସୁମନ୍ତ ପାଞ୍ଚଶହ ଟଙ୍କାର ନୋଟ୍ ବିଡ଼ା ଆଣି ସୁରଭି ଉପରକୁ ଫୋପାଡ଼ି ଦେଲା । ନିଅ ଏତିକିରେ ଚଳ ? ଆଉ ଅଧିକା ହୋଇପାରିବ ନାହିଁ ।

ସେ ନୋଟ ବିଡ଼ା ହାତରେ ଧରିଛି, ଚାରିଆଡ଼କୁ ଚାହୁଁଛି । ଚଳିବ, ପିଲାଙ୍କ ଦରମା, ଚାକର, କ୍ଷୀର, ଅଣ୍ଡା ଏବଂ ମାସକ ଚଳିବା ପାଇଁ ସଉଦା ବନ୍ଧୁବାନ୍ଧବ, ଯିବା ଆସିବା ଏତିକି ଟଙ୍କାରେ କଣ ହେବ ?

ଯାହା ମୁଁ ଜାଣୁଛି ଆସ୍ତେ ଆସ୍ତେ ଏ ଘରୁ ଯିବ । ସେ ବିଚଳିତ ହୋଇପଡ଼ିଲା ।

ସୁମନ୍ତ ସାଙ୍ଗସାଥିମାନଙ୍କ ସାଙ୍ଗରେ ମିଶି ଦିନକୁ ଦିନ ବେଶୀ ପରିମାଣରେ ମଦ ପିଇବାକୁ ଲାଗିଲା ।

ଆସ୍ତେ ଆସ୍ତେ ଅଭାବ ମାଡ଼ି ଆସିଲା ।

ସ୍ୱାମୀର ଚିନ୍ତାରେ ସୁରଭି ଦିନକୁ ଦିନ ହତ ଉତ୍ସାହ ହୋଇପଡୁଛି ।

ଘରର ଚାରିଆଡ଼କୁ ଚାହିଁ, ସେ, ମନେମନେ ଭାବିଲା, କଣ ପାଇଁ ବାପା ମୋର ଆଇ.ଏ.ଏସ୍ ଅଫିସରକୁ ବାହା ଦେଇଥିଲେ ।

ମୁଁ ଆସିଲାବେଳେ ଏ ଘରେ କଣ ବା, ନଥିଲା ? ଏଇ ଆଖି ମୋର ଦେଖୁଛି ଆଉ କଣ ବା ଏ ଘରେ ଅଛି ? ପିଲା ମୋର ଶୋଇବାକୁ ଶେଯଟିକେ ନାହିଁ । ସୋଫାସେଟ୍ ତକ ଚିରି କନାତକ ଓହଳିଲାଣି । କର୍ପୂର ଆସ୍ତେ ଆସ୍ତେ ଉଡ଼ିଯାଉଛି । କନାକୁ ମୁଁ କେତେ ଜାବୁଡ଼ି ଧରିବି ? ଗରୀବ ଘରେ ବିବାହ ହୋଇଥିଲେ ଶାନ୍ତି ପାଇଥାନ୍ତି ।

ସେ, ଲୁହରେ ଆଜି ଅନ୍ଧ ।

ସୁମନ୍ତ ପ୍ରତିଦିନ ସନ୍ଧ୍ୟା ସାତଟରେ ଯାଏ କ୍ଲବକୁ । ଫେରୁଫେରୁ ହୋଇଯାଏ ରାତି ଦୁଇ । ମାତ୍ର ସେ, ଘରେ ପଶିଲା ବେଳକୁ ତାର ଜ୍ଞାନ ନଥାଏ । ମଦର ନିଶାରେ ଟଳି ଟଳି ବିଛଣାରେ ପଡ଼ିଯାଏ ।

ସୁରଭି ସ୍ୱାମୀର ବିଛଣା ପାଖରେ ବସି ଦେହ ମୁଣ୍ଡ ଆଉଁସି ପକାଇ କହେ - ଏତେ ସୁନ୍ଦର ରୂପ କଣ ହେଲାଣି ? ହୃଦୟ ତାର ଫାଟି ପଡ଼ିଲା ପରି ଲାଗେ । ପେଟରୁ ତାର କୋହ ଉଠେ । ସ୍ୱାମୀକୁ ଚାଦର ଖଣ୍ଡିଏ ଘୋଡ଼ାଇ ଦେଇ ପିଲାଙ୍କ ପାଖରେ ଆସି ସୁଏ ।

ଆଜି ଦୀପାବଳୀ ଅମାବାସ୍ୟା । ଘରେ ଘରେ ଦୀପ ଜଳୁଛି । ବାଣ ଫୁଟୁଛି । କ୍ଲବରେ ଆଜି ଡିନର୍ ପାର୍ଟି, ନାଚ ଗୀତ ।

ସୁରଭି ପିଲାଙ୍କୁ ନେଇ କ୍ଲବ ଯାଇଛି ।

ମିଉଜିକ୍, ଡ୍ୟାନସ୍ ଚାଲିଛି, ସୁରଭି ଚାହିଁ ଦେଇ ଚମକି ପଡ଼ିଲା । ସ୍ୱାମୀ ତାର ଅର୍ଦ୍ଧନଗ୍ନ ସ୍ତ୍ରୀ ବାହୁରେ ଟଳି ନାଚୁଛନ୍ତି । ତାର ମନ ଅସ୍ଥିର ହୋଇ ଉଠିଲା । ସେ, ପିଲାଙ୍କୁ ନେଇ ଘରକୁ ପଳାଇ ଆସିଲା ।

ତାର ସ୍ୱାମୀ ପ୍ରତି ଆସିଲା ଘୃଣା ନିଜ ପ୍ରତି ଆସିଲା ବିତୃଷ୍ଣା । ନାଁ, ଆଉ ନୁହେଁ, ପିଲାଙ୍କ ଭାଗ୍ୟରେ ଯାହାଥିବ । ତାର ହୃଦୟ ପାଷାଣଠାରୁ ହୋଇଗଲା ଆହୁରି ଟାଣ । ସେ ଠିକ୍ କଲା, ଶେଷ ନିଷ୍ପତ୍ତି ନବା ପାଇଁ, ତା ଜୀବନରେ ବା ଆଉ କି ଲାଭ ।

ପିଲାଙ୍କୁ ଶେଷ ଥର ପାଇଁ ଚାହିଁଲା । ମାତୃହୃଦୟ ଅସ୍ଥିର ହୋଇପଡ଼ିଲା । ଆଖିରୁ ତାର ଗଡ଼ିପଡ଼ିଲା କେତେ ଠୋପା ଲୁହ !! ହେ ପ୍ରଭୁ ତୁମେ ହିଁ ଭରଷା !!!



# ଭାଇଭାଗ

ହରିପୁର ଗାଁ । ପଧାନ ଘର ବୋଲି ନାମ ଡାକ୍ । ରାମ ପଧାନର ଦୁଇପୁଅ । ବଡ଼ପୁଅ ରାଜୁ, ସାନପୁଅ ବିଜୁ । ଗାଁ, ଗଣ୍ଡା ସମସ୍ତେ ରାମପଧାନକୁ ମାନନ୍ତି ।

ରମାପଧାନ ଯେପରି ଧାର୍ମିକ ଥିଲା । ତାର ସ୍ତ୍ରୀ ମଧ୍ୟ ଲକ୍ଷ୍ମୀଟିଏ ଥିଲା । ଗାଁରେ ଯାହାର ଯାହା ଅଭାବ ହୁଏ - ସ୍ୱାମୀ, ସ୍ତ୍ରୀ ଦୁହେଁ ପୂରଣ କରନ୍ତି । କାହାଘରେ ଖାଇବାକୁ ନଥିଲେ ବୁଢ଼ୀ ବୋହୁମାନଙ୍କୁ ଲୁଚାଇ ଚାଉଳ ଦେଇଦିଏ । କାହାଘରେ କଳିକଜିଆ ଲାଗିଲେ ରାମପଧାନକୁ ଡକରା ଆସେ । ରାମପଧାନ ଲୋକଙ୍କ ମଝିରେ ପଶି ଝଗଡ଼ା ଛିଣ୍ଡାଇଦିଏ ।

ରାଜୁ ଘର ଦ୍ୱାର ଜମିବାଡ଼ି ବାହାରର ଭଲ ମନ୍ଦ ସବୁ ବୁଝେ । ବିଜୁ କିଛି ବୁଝେ ନାହିଁ । ଗଣ୍ଡିଏ ଖାଇଦେଇ ବୁଲୁଥାଏ ।

ରାଜୁର ସ୍ତ୍ରୀ ନାଁ ମାଧବୀ । ବିଜୁର ସ୍ତ୍ରୀ ନା ସଉଦି ।

ରାଜୁର ପୁଅ ଦୁଇଟି ଝିଅ ଗୋଟିଏ । ବଡ଼ପୁଅଟି ନାଁ କୁନୁ, ସାନଟି ନାଁ ଦିନୁ । ଝିଅଟି ନାଁ ରାଧା ।

ମାଧବୀ ଭାରି ପରିଶ୍ରମୀ । ଶାଶୁ, ଶ୍ୱଶୁରଙ୍କ କାମ, ଘରକାମ ସବୁ ଆଗ୍ରହରେ କରେ । ସଉଦି ଯାହା କହିଲେ ବିରକ୍ତ ହୁଏ ।

ଆଜି ପହିଲି ରଜ । ବିରି ଚାଉଳ ତିନ୍ତା ହୋଇଛି । ବଟା ହୋଇନାହିଁ ।

ବୁଢ଼ୀ ଡାକପକାଇଲା - ଇଲୋ, ବିରିଗଣ୍ଡାକ ବାଟିଦିଅ ।

ଶାଶୁଙ୍କ ପାଟିଶୁଣି ମାଧବୀ, ତର ତର କରି ବିରିତକ ବାଟି ବସିଲା ।

ସଉଦିର କାହା କଥାକୁ ଖାତିରି ନଥାଏ । ସେ ଗଣ୍ଡାଏ ଖାଇଦେଇ ପାନଖିଲେ ଗୁଞ୍ଜି ବସିଥାଏ ।

ବୁଢ଼ୀ ରାତିରୁ ଉଠି ବୋହୂମାନଙ୍କୁ ଡାକିଲା, ଉଠ, ମୁଣ୍ଡ କୁଣ୍ଡାଇ ଗାଧୋଇ ଯାଅ ।

ବୋହୂଯାକ ମୁଣ୍ଡ କୁଣ୍ଡାଇ ହଳଦି କାଠୁଆଏ ନେଇ ପୋଖରିକି ଗାଧୋଇ ଗଲେ । ଆଜି ପୋଖରି ପାଖରେ ଭିଡ଼ । ଗାଁର ବୋହୂ ଝିଅ ସମସ୍ତେ ସେଠାରେ ରୁଣ୍ଡ ।

ପିତେଇ ନାନୀ କହିଲା, ହଇଲୋ, ପଧାନ ଘର ବଡ଼ ବୋହୂ ଦୁଇ ଜାଆ ଯାକ କଣ କାମସାରି ଗାଧୋଇ ଆସିଲ ?

ହଁ ମାଉସି ସବୁକାମ ସାରି ଆସିଲୁ ? ଦୁଇଯାଆ ଯାକ ଗାଧୋଇ, ପାଧୋଇ ଘରକୁ ଫେରିଲେ ।

ମାଧବୀ ଡାକିଲା, ସାନବୋହୁ - ଯାଆ ଚୁଲିଲଗାଇ ଚକୁଳି ଦିଖଣ୍ଡ କରିଦେ । ମୁଁ ଯାଏ ଗାଇ, ଗୋରୁ ପଦାକୁ ବାହାର କରି ଗୁହାଳଟାକୁ ସଫା କରିଦିଏ ।

ସଉଦି କିଛି ଶୁଣିଲା ନାହିଁ । ସେ ରଗ ରଗ ହୋଇ କହିଲା, ମଲା । ମୋର କିଏ ଅଛିକି ଖାଇବାକୁ ମୁଁ । ନିଆଁ ପାଖରେ ବସି ରାନ୍ଧୁଥିବି ? ରାନ୍ଧିଲା ବେଳକୁ, ମୁଁ ରାନ୍ଧିବି । ଖାଇଲାବେଳକୁ ତାର ପାଞ୍ଚପ୍ରାଣୀ ଖାଇବେ ।

ମୋର କଣ ଏଘର ସମ୍ପତ୍ତିରେ ଭାଗ ନାହିଁ ? ମୋ, ବାପ କଣ ମୋତେ ଦେଇ ନଥିଲା ।

ମାଧବୀ ଗୁହାଳ ସଫା କରି ଗାଇ ବାନ୍ଧୁଛି, ବାହାରେ ରାଧା ଡାକ ପକାଇଲା । ହେ ବୋଉ; ଗାଇ କଣ ବାନ୍ଧୁଛୁ ? ଯା ଦେଖିବୁ ଖୁଡ଼ି କେମିତି ପାଟି କରୁଛି ।

ମାଧବୀ ବାହାରେ ଗାଇକୁ ବାନ୍ଧି ଦେଇ ଛଣ ଦୁଇବିଡ଼ା ପକାଇ ଝିଅକୁ କହିଲା, ଚାଲ ? ଖୁଡ଼ି କହିବା କଥା ମୁଁ ସବୁ ଶୁଣିଛି ।

ସଉଦି ପିଠା କରୁଛି । ରାଗରେ ମୁହଁ ତାର ଲାଲ । ମାଧବୀ ବାହାରୁ ଆସି ଅଗଣା ମଝିରେ ଠିଆ ହୋଇପଡ଼ି କହିଲା - କଣ କହୁଛୁ, ତୁ କହିବା

କଥା ମୁଁ ସବୁ ଶୁଣିଛି । ତୋର ଯଦି ଇଚ୍ଛା ନାହିଁ, ମୁଁ ଆସିଥିଲେ ପିଠା କରିଥାନ୍ତି ପାଟି କରିବା କଣ ଦରକାର ? ଶାଶୁ ଶ୍ୱଶୁର ଶୁଣିଲେ କଣ କହିବେ । ସବୁ ମୋର ଦୋଷ ହେବ । ଏତେବଡ଼ ପାଟି କରୁଛୁ ତତେ ଲାଜ ଲାଗୁନାହିଁ ।

ଦୁଇବୋହୂଙ୍କର ପାଟି ଶୁଣି ବୁଢ଼ୀ ଦୌଡ଼ିଆସିଲା । କାହିଁକି ପାଟି କରୁଛ ହଇଲୋ ? ସାଇପଡ଼ିଶା ଶୁଣି କଣ କହିବେ? ଆଲୋ, ଗାଁ ଗୋଟାକର ଆମେ ଛିଣ୍ଡାଉଛୁ । ଆମ କଳି କିଏ ଛିଣ୍ଡାଇବ । କୋଉଠୁ ଦୁଇଟା ଯାକ ମୋ କପାଳକୁ ଆସିଥିଲ । ଆଲୋ, ଆମେ କଣ ଶାଶୁ ଘରେ ବୋହୂ ହୋଇନଥିଲୁ । ଏମିତି କୋଉଁ ଲାଟସାହେବ ଘରୁ ଝିଅ ଆସିଥିଲ, ମୋର ସୁନାର ସଂସାର ଚୂନା କରିବ ।

ବୁଢ଼ୀ ଏତକ କହି ଦାଣ୍ଡପିଣ୍ଡାରେ ଯାଇ ବସିଲା ।

ସଉଦି ଘର ଭିତରକୁ ଯାଇ ସଉପ ଖଣ୍ଡେ ପକାଇ ରାଗିକରି ଶୋଇଲା ଏବଂ ମନେମନେ, କହିଲା - ଆଜି ଆସନ୍ତୁ । ଭିନ୍ନେ ଯଦି ହେବେ ମୁଁ ରହିବି, ନ ହେଲେ ମୋ ବାପ ଘରକୁ ଯିବି ।

ସକାଳୁ ବିଜୁ ନାହିଁ । ଆଜି, ପହିଲୁ ରଜ । ଗାଁ ପାଖକୁ ଦୁଇକୋଶ ହେବ ମହାଦେବ ମନ୍ଦିର । ସେଠି ଆଜି ଯାତରା । ଘରୁ ଦୁଧ କଦଳୀ ନେଇ ବିଜୁଯାଇଛି । ପୂଜା ସାରି ପିଲାଙ୍କ ପାଇଁ ଭୋଗ ଖେଳଣା, ରାଧା ପାଇଁ କାଚ, ରିବନ ଆଣି ଘରେ ପହଞ୍ଚିଲାବେଳକୁ ରାତି ଘଡ଼ିଏ ।

ପିଲାଯାକ ଚାହିଁ ଚାହିଁ ଶୋଇ ପଡ଼ିଛନ୍ତି । ଦା ଦା ଯାଇଛି ଯାତରାକୁ ଆମ ପାଇଁ ଆଣିବ ମିଠେଇ ଖେଳଣା ।

ବିଜୁ ପୁତୁରା, ଝିଆରିକୁ ବହୁତ ଭଲପାଏ । ସେ, ଆସି ଡାକ ପକାଇଲା । କୁନୁ, ଗୁନୁ, ରାଧା ଉଠ ତୁମ ପାଇଁ କଣ ଆସିଛି ଦେଖ ?

ପିଲା ତିନୋଟି ଦାଦାର ପାଟି ଶୁଣି ନିଦ ମଳମଳ ହୋଇ ଉଠି ବସି ଖେଳଣା ତକ ଧରିଲେ ।

ମାଧବୀ ଦିଅରକୁ ଖାଇବାକୁ ଦେଲା ।

ସଉଦି ଏସବୁ ଦେଖି ରାଗରେ ଜଳି ଯାଉଥାଏ ।

ଘର ଭିତରେ ଯେମିତି ବିଜୁ ଗୋଡ଼ ଦେଇଛି, ସଉଦି ତକିଆରେ ମୁହଁ ମାଡ଼ି କାନ୍ଦିବାକୁ ଲାଗିଲା ।

ବିଜୁ ପଚାରିଲା । ଆଜି କଣ ହୋଇଛି ?

କଣ ହୋଇବ ଏ ଘରେ ? ଯଦି ତୁମେ ଭିନ୍ନେ ହେବ ମୁଁ ରହିବି, ନଚେତ୍ ମୋ ବାପଘରକୁ ମୁଁ ଚାଲିଯିବି ।

- କାହିଁକି, କିଏ କଣ କହିଛି ?

କିଏ ଆଉ କହିବ, ତୁମ ଭାଉଜ୍ୟ ଏ ଘରେ କଣ ମୁଁ କେହି ନୁହେଁ । ମୋର କଣ ଏ ଘରେ ଅଧିକାର ନାହିଁ । ମୋ, ବାପ କଣ ମୋତେ ଦେଇନଥିଲା । ମୁଁ କାହିଁକି, ଏତେ ସହିବି ?

ବିଜୁ ସ୍ତ୍ରୀଠାରୁ ସବୁ ଶୁଣି ଚୁପ୍ ହୋଇ ରହିଲା । ମନେ ମନେ ଭାବିଲା ଘର ହୋଇ ଏହିପରି ଲାଗେ । ଭାଇକି କଣ ବା କହିବି ?

ଦୁଇ ଯାଆଙ୍କର କେତେବେଳେ ହେଲେ ପଡ଼ିଲା ନାହିଁ ।

ରାମପଧାନ ଦେହ ବହୁତ ଖରାପ ବୁଢ଼ୀଟି ପାଖରେ ବସିଥାଏ । ପୁଅ ଦୁଇଜଣ ପାଖରେ ବସିଛନ୍ତି । ଗାଁ ଯାକ ବୁଢ଼ାର ଚାରିପାଖ ରୁଣ୍ଡ ହୋଇଛନ୍ତି । ବୁଢ଼ା ଖନେଇ, ଖନେଇ ଦୁଇପୁଅଙ୍କୁ ଡାକି, କହିଲା, ଆରେ ବାପ ମୁଁ ତ ଆସି ବାଟ ଧରିଲିଣି । ଦୁଇଜଣ ଯାକ ମନ ମିଳାଇ ଚଳିବ । ମଣିଷ ପରି ମଣିଷ ହେବ । ଘର ହୋଇ କଳିକଜିଆ ଲାଗେ ।

ବୁଢ଼ା ଦୁଇଦିନ ପରେ ଆଖି ବୁଜିଲା । ବୁଢ଼ୀର ହାତରୁ ଶଙ୍ଖା, ମୁଣ୍ଡରୁ ସିନ୍ଦୂର ଲିଭିଲା ।

ରାଜୁ, ବିଜୁ ବାପର ଶୁଦ୍ଧିକ୍ରିୟା ଭଲରେ ସାରିଲେ ।

ବୁଢ଼ୀ, ବୁଢ଼ାକୁ ମନେପକାଇ ସବୁବେଳେ କାନ୍ଦେ । ଆଉ ତାର କଣ ଅଛି । କିଏ ବା ତାକୁ ଆଉ ମାନୁଛି । କେତେବେଳେ ହେଲେ ଦୁଇଯାଆଙ୍କର ମନମଳିଲା ନାହିଁ ।

ରାଜୁ ସବୁଦେଖେ, କାହାକୁ କିଛି କହେ ନାହିଁ ।

ବୁଢ଼ୀ, ବୁଢ଼ାକୁ ଝୁରି, ଝୁରି ଆଖି ବୁଜିଲା ।

ରାଜୁର ବାପ, ମାଙ୍କ କଥା ମନେପଡ଼େ । ବାପା ମଲାବେଳେ କହିଥିଲେ ମଣିଷ ପରି ମଣିଷ ହେବ, ସବୁ ଘରେ କଳିକଜିଆ ଲାଗେ ।

ବିଜୁ ଘର ସଂସାର କରି ମଧ୍ୟ ପିଲାଳିଆ ବୁଦ୍ଧି ଗଲାନାହିଁ ।

ମାଧବୀ ଯଦି ଘରର ଭଲମନ୍ଦ କଥା କହନ୍ତି । ରାଜୁ ହସି ଦେଇ କାମକୁ ଚାଲିଯାଏ ।

ଧାନ ଉସୁଁଆ ହୋଇ ଅଗଣାରେ କୁଢ଼ା ହୋଇଛି । ମାଧବୀ କହିଦେଇ ଗଲା - ସାନବୋହୁ ଅଗଣାରେ ଧାନ କୁଢ଼ା ହୋଇଛି ଟିକେ ଶୁଖାଇଦବୁ ମୁଁ ଗାଧୋଇ ଆସେ ।

ସଉଦି ସବୁ ଶୁଣି ନଶୁଣିଲା ପରି ରହିଲା ।

ମାଧବୀ ଗାଧୋଇ ଆସି ଅଗଣା ଭିତରକୁ ପଶିଗଲେ, ଦେଖିଲା ରନ୍ଧା ହୋଇନାହିଁ । କହିଯାଇଥିଲା ଧାନଗଣ୍ଡାକ ଶୁଖାଇ ଦବାକୁ, ସେହିପରି ପଡ଼ିରହିଛି । ପିଲାଏ ଭୋକରେ ଆଉଟୁ ପାଉଟୁ ହେଲେଣି ।

ମାଧବୀ ଦେହରେ ଯେପରି ନିଆଁ ଲାଗିଲା । ସେ ମନେ ମନେ ଭାବିଲା - କଣ ଏ ଘର ପାଇଁ ମୁଁ କରିନଥିଲି । ଶାଶୁ ଶ୍ୱଶୁରଙ୍କର କରିନଥିଲି ନା, ଦିଅର ଯାଙ୍କର କରି ନଥିଲି । ସେ ପାଟି କରି ଉଠିଲା - ସାନ ବୋହୁ ତତେ କହି ଯାଇଥିଲି ଧାନଗଣ୍ଡାକ ଶୁଖାଇ ଦବାକୁ, ଧାନ ସେମିତି ପଡ଼ିରହିଛି । ଏଣେ ରାନ୍ଧିନାହୁଁ, ସେ, ବିଲରୁ ଖଟି, ଖଟି ଆସୁଥିବେ । ପିଲାଏ ଭୋକରେ କାନ୍ଦିଲେଣି, ମୁଁ ଗୋଟାଏ ମଣିଷ କେତେ କରିବି ?

ଲାଗିଲା, ଦୁଇ ଯାଆଙ୍କର ଝଟାପଟା କଳି। ବିଜୁ ନଥିଲା। ଆସି ପହଞ୍ଚିଲା। ନାଁ ଆଉ ଚଳି ହେବ ନାହିଁ। ଯେତେଭାଇ ସେତେ ଘର। ଭିନ୍ନେ ହେଲେ କ୍ଷତି କଣ। ବିଜୁ, ବାହାରିଲା ନିତିଆ ଅଜା ଘରକୁ। ଆଜି ଯାହା ଗୋଟେ ଠିକ୍ କରିବାକୁ ହେବ।

ନିତିଆ ଅଜା ଦାଣ୍ଡପିଣ୍ଡାରେ ବସି, ପାନରେ ଚୁନ ଲଗାଉଛନ୍ତି। ବିଜୁ ଯାଇ ପହଞ୍ଚି ପଚାରିଲା - କଣ ଅଜା କରୁଛ ?

ନାହିଁରେ, ନାତି ଆଉ କଣ କରିବି, ବୁଢ଼ା ହେଲି କାମ ଦାମକୁ ତ, ଆଉ ପାରୁନାହିଁ। ଗଣ୍ଡେ ଖାଇ ଦାଣ୍ଡପିଣ୍ଡାରେ ବସିବା କଥା।

ନାତି, କୁଆଡ଼େ ଆସିଲ, ଆଉ ଘର ଖବର କଣ, ସବୁ ଭଲତ ?

ଅଜା ଆଉ ଭଲ କଣ, ଆସିଥିଲି ତୁମ ପାଖକୁ ଗୋଟେ ଜରୁରୀ କାମରେ।

- କଣ କହୁନୁ।

- କଣ କହିବି ଅଜା କଥାରେ ଅଛି - ଯେତେ ଭାଇ ସେତେ ଘର। ଭାଇକି ଟିକେ କୁହନ୍ତ, ଜମି ବାଡ଼ି ଘରଦ୍ୱାର ଅଲଗା କରି ମୋ ଅଧକ ମୋତେ ଦେଇଦେବେ।

ନିତ୍ୟାନନ୍ଦ କହିଲେ, ହଉ ଯା, ମୁଁ ରାଜୁକୁ କହିବି ?

ତା ଆରଦିନ ସକାଳୁ ବୁଢ଼ା ବାଡ଼ିଖଣ୍ଡିକ ଧରି ପଧାନଙ୍କ ଘର ପାଖରେ ଡାକ ପକାଇଲେ - ରାଜୁ, ଅଛୁ କିରେ ?

ରାଜୁ ପଖାଳ କଂସାକ ଧରି ଖାଇ ବସିଛି। ମାଧବୀ ପାଖରେ ବସିଛନ୍ତି।

ଅଜାଙ୍କ ପାଟି ଶୁଣି, ରାଜୁ ଭାତ କଂସା ପାଖରୁ ଉଠି ଦାଣ୍ଡକୁ ଆସିଲା। ଅଜା ସକାଳୁ, ସକାଳୁ କୁଆଡ଼େ ?

- ବାପ, ତୋ ପାଖରେ ଗୋଟାଏ କାମଥିଲା ବସିଲେ କହିବି।

ରାଜୁ କହିଲା, ହଉ ଅଜା ଆସ ଘରକୁ ।

ବୁଢ଼ା ଘର ଭିତରକୁ ଗଲେ ।

ମାଧବୀ ବୁଢ଼ାଙ୍କ ଗୋଡ଼ତଳେ ପଡ଼ି, ପାନଭାଙ୍ଗି ପାଖରେ ଥୋଇଲା ।

ବୁଢ଼ା କହିଲେ । ହଇରେ, ରାଜୁ, କଣ କହୁଥିଲି କି... ଆଜି ସକାଳୁ, ବିଜୁ ମୋ ପାଖରେ ପହଞ୍ଚି କହିଲା, ଜମିତକ, ଅଧା କରି ଦବା ପାଇଁ ।

ରାଜୁ କାନ୍ଦି ପକାଇ କହିଲା ଅଜା, ଜମି କାହିଁକି ଅଲଗା ହେବ ।

ଏ ଘର, ଜମି ବାଡ଼ି ତାର ସବୁ । ସେ ରହୁ । ମୁଁ ଗାଁ ଛାଡ଼ି ଚାଲିଯିବି । ରାଜୁ ପଧାନକୁ ରହିବାକୁ ଜାଗା ମିଳିବ । ପିଲାଟି ଦିନରୁ ଏଡୁଟିଏ କଲି - ଆଜି, ତାଠାରୁ ଭିନ୍ନେ ହେବି । ରାଜୁ ପଧାନର ସୁନାର ସଂସାର ଚୂନା କରି ପାରିବି ନାହିଁ । ଭଗବାନ ତାକୁ, ଆନନ୍ଦରେ ରଖନ୍ତୁ ।

ବୁଢ଼ା ଆଉ କିଛି ନ କହି, ଘର ମୁହାଁ ହେଲେ ।

ବିଜୁ ବୁଲି ବୁଲି ରାତି ପହରକରେ ଘରେ ପହଞ୍ଚି ନଖାଇ ଶୋଇଲା ।

ରାତିରେ ରାଜୁ ମାଧବୀକୁ କହିଲା ପିଲାଙ୍କୁ ଧରି, ଆମେ କାଲି ଯିବା ମଉସା ଘରକୁ ।

ଅନ୍ଧାରୁଆ । ଅନ୍ଧାରୁଆ ହୋଇଛି, ରାଜୁ ପିଲାଙ୍କୁ ଧରି ମଉସା ଘରକୁ ଗଲା ।

ବିଜୁ ସକାଳୁ ଉଠି ଦେଖିଲା, ଘର ଶୁନ୍‌ଶାନ । ପିଲାଙ୍କ ପାଟି ଶୁଭୁ ନାହିଁ । ତାର ମନେ ପଡ଼ିଗଲା ସେ ନିତିଆ ଅଜାଙ୍କୁ କହିଥିଲା । ଭାଇଙ୍କି କହିବେ । ଜମି ଅଲଗା କରିବା ପାଇଁ ।

ଅଜା କହିଛନ୍ତି । ଭାଇ ଘରଛାଡ଼ି ଚାଲିଯାଇଛନ୍ତି ।

ତାର ବାପ କହିବା କଥା ମନେ ପଡ଼ିଗଲା । ତାର ମନ ଅସ୍ଥିର ହୋଇଉଠିଲା । ଖାଇବା ପିଇବା ବିଷ ପରି ଲାଗିଲା । ଆଖିରୁ ତାର ଲୁହ ଟପ୍‌ଟପ୍ ହୋଇ ବୋହିପଡ଼ିଲା ।

ସଉଦି କାଠଟିପରି ସ୍ୱାମୀକି ଚାହିଁ ରହିଛି ।





# ଅନ୍ତିମ ଭଜନ

ଭିକାରୀପଧାନ ବୁଢ଼ା ଚାଲିଛି । ଗୋଡ଼ ତାର ଅଟକୁ ନାହିଁ । ଦେହରେ ମସିଆ ଲୁଗା - ଦଶଜାଗା ସିଲେଇ, ନେଳିଆ କନାର ଫଟେଇ ଖଣ୍ଡେ । ଚମ ଧୁଡୁଧୁଡୁ ହେଲାଣି । ବାଳ ପାଚି ଦେଖାଯାଉଛି ଝୋଟପରି । କିନ୍ତୁ, ବୁଢ଼ାର ବିଶ୍ରାମ ନାହିଁ ।

ସେ ଆଜି ଚାଲିଛି ଭଗବାନଙ୍କ ଉପରେ ଆଶା, ଭରସା ରଖି ପେଟ ଚାଖଣ୍ଡକ ପାଇଁ ।

ଭିକାରୀ ପଧାନ, ସକାଳୁ ଉଠି ପଖାଳ ଦୁଇଟା ଖାଇ କାମକୁ ବାରିପଡ଼େ ।

ରାଉରକେଲା ସହର ଗାଡ଼ି ମଟର ଧାଡ଼ିକି ଧାଡ଼ି । କିନ୍ତୁ ଭିକାରୀ ପଧାନ ଚାଲିଥାଏ ରସ୍ତାରେ ହଲି ହଲି । ବାଟରେ ଯିଏ ଦେଖେ ପାଟି କରେ ଆରେ, ବୁଢ଼ା, ରାସ୍ତା ଦେଖି ଚାଲେ । ଗାଡ଼ି ମଟର ମାଡ଼ିଯିବ ଯେ ?

ହଁ ବାବୁ, ମୋର କଣ ହେବ, ସତେ ଜଗାକାଳିଆ ମୋତେ ନବ ? ଏତକ କହିଲାବେଳେ ବୁଢ଼ାର ଆଖି ହୋଇଯାଏ ଛଳଛଳ । ତାର ଅତୀତ କଥା ମନେପଡ଼େ । କଣ, ମୋର ନଥିଲା, ଗୋଟା ଗୋଟା କରି ତିନିଟା ବାହା ହେଲି ଏ ଫଟା କପାଳକୁ ଗୋଟାଏ ରହିଲା ନାହିଁ । ଶେଷରେ ମା, ଟି ଥିଲା ସେ ବି ଗଲା । ଶେଷକୁ ଆଉ ଦୁଃଖ ସମ୍ଭାଳି ନପାରି, ଘର ଡିହ ଖଣ୍ଡିକ ବିକି ଜନ୍ମଭୂମିର ମାୟାମମତା ତୁଟାଇ ରାଉରକେଲା ସହରକୁ ଚାଲି ଆସିଲି ପେଟ ଚାଖଣ୍ଡକ ପାଇଁ । ହେ ଜଗା ତୁ ଏକା ଭରସା ?

ବୁଢ଼ା କାମରୁ ଫେରି ଘରେ ପହଞ୍ଚିଲା ବେଳକୁ ମୁହଁ ସନ୍ଧ୍ୟା । ସେ ଆଣିଥିବା । ଚାଉଳ ଗଣ୍ଡାକ, ପରିବା ଦୁଇଟା, କାଠବିଡ଼ାକ ଘର ଦ୍ୱାର ମୁହଁରେ ଫୋପାଡ଼ି ଦେଇ, ଲଥ କିନା କିଛି ସମୟ ବସି ପଡ଼ିଲା ମୁଣ୍ଡରେ ହାତଦେଇ । ଆଖିରୁ ତାର ଗଡ଼ି ପଡ଼ିଲା ଲୁହ ।

ବୁଡ଼ା ଠାକୁରଙ୍କ ଭକ୍ତ । ଘର ଭିତରେ ଜଗନ୍ନାଥଙ୍କ ଫଟଟିଏ ରଖିଥାଏ । ସେ, କାମରୁ ଫେରିଲେ ଗୋଡ଼ ହାତ ଧୋଇ, ଚାଉଳ ଦୁଇଟା ହାଣ୍ଡିରେ ପକାଇ, ବସି ପଡ଼େ ଠାକୁରଙ୍କ ପାଖରେ ଭଜନ କରି ।

ସେ, ଭଜନ କଲାବେଳେ ସବୁ ଦୁଃଖ, ଶୋକ ଭୁଲିଯାଏ । ସାହି ପଡ଼ିଶା ରୁଣ୍ଡ ହୋଇପଡ଼ନ୍ତି ଭଜନ ଶୁଣିବାକୁ ।

ପଧାନ ବୁଢ଼ା କାମରୁ ଫେରୁଛି, ସୂର୍ଯ୍ୟଅସ୍ତ ହେଲେଣି ଅନ୍ଧାର ପକ୍ଷ । ବର୍ଷା ପବନ ମାଡ଼ି ଆସୁଛି । ରାସ୍ତାର ଲାଇଟ୍ ଗୁଡ଼ାକ ଲିଭିଗଲା । ମୁହଁକୁ, ମୁହଁ ଦେଖାଯାଉନାହିଁ । ରାସ୍ତା କଡ଼ ଗଛଗୁଡ଼ାକରେ ପକ୍ଷୀଗୁଡ଼ାକ ଚେଁ ଚାଁ ହଉଛନ୍ତି । ତାକୁ ମାଡ଼ି ମାଡ଼ି ପଡୁଛି । କିପରି ଘର ପାଖରେ ପହଁଞ୍ଚିବ । କାମ ପାଖରୁ ଘର ତାହାର ପ୍ରାୟ ଦୁଇମାଇଲ ହେବ ।

ହଲି, ହଲି ଚାଲିଛି ସେ, ବର୍ଷା ପବନ ମାଡ଼ରେ । ଦେହ ତାର ଦୋହଲି ଉଠୁଛି । ମଝିରେ ମଝିରେ ଡାକ ଛାଡ଼ିଛି, ହେ ଜଗା ତୁ ଭରସା ମୋର ଆଉ କେହି ନାହିଁ ।

ଜଗାକୁ ଡାକିଲାବେଳେ ତାର ଦେହଟା ସତେକି ହାଲୁକା ହୋଇ ଉଠେ ।

ରାତି ପହରକରେ ଭିକାରୀ ପଧାନ ଘରେ ପହଁଞ୍ଚିଲା । କାଠତକ ଓଦା, ଚାଉଳ ପୁଞ୍ଜାକ, ଅଧେ ଅଛି ତ, ଅଧେ ଉଡ଼ିଯାଇଛି । ବର୍ଷା ପାଣିରେ ଦେହ ତାର ବରଡ଼ା ପତ୍ର ପରି ଥରୁଛି । ସେ ଲୁଗାଟା ଓ ଫତେଇଟାକୁ ଶୁଖାଇ ଦେଲା । ଗାମୁଛା ଖଣ୍ଡିକ ପିନ୍ଧି ବସିଲା ଭଜନ କରି । ଭଜନ ସାରି ଆଉ ରାନ୍ଧିଲା ନାହିଁ କି ଖାଇଲା ନାହିଁ । ଭୋକରେ ତାର ପେଟ ଜଳୁଛି । ଭୋକର ବେଦନାକୁ ସେ, ପଛକୁ ପକାଇ, ଘୋଡ଼େଇ ପୋଡ଼େଇ ଶୋଇଲା । ରାତି ପାହିଲା ଭିକାରୀ ପଧାନ ବୁଢ଼ା ବାହାରିଲା ନିଜର କର୍ମକ୍ଷେତ୍ରକୁ । ସେ, ରାତିରୁ ଖାଇନାହିଁ । ଭୋକରେ ପେଟ ପିଠି ସାଙ୍ଗରେ ମିଶି ଯାଉଛି । ଦେହ ତାର ଅବସ ଲାଗୁଛି । ଗୋଡ଼ ହାତ ଚଳୁନାହିଁ । ମାତ୍ର ସେ ଆଜି ମନର ଜୋରରେ ଚାଲିଛି ବାଟରେ ଭଜନ ଗାଇ ଗାଇ ।

ବିରାଟ ପୋର୍ଟିକ ଗ୍ରିଲ୍ ଗେଟ । ଭିତରେ ନା ନା ଜାତିର ଫୁଲଗଛ । ଦାଣ୍ଡପିଣ୍ଡାରେ ଗଡ଼ରେଜର ସୋଫା । ରାଉରକେଲାର ବିଶିଷ୍ଟ ଇଞ୍ଜିନିଅର ତାଙ୍କ ସ୍ତ୍ରୀ ବସିଛନ୍ତି । ପାଖରେ ତାଙ୍କର ସାତବର୍ଷର ଝିଅମିନା ଖେଳୁଛି ।

ତାକୁ ଶୁଭିଗଲା ଅତି କରୁଣ ସ୍ୱରରେ କିଏ ଗୀତ ଗାଇ ଚାଲିଛି ।

ମୀନା ଗ୍ରିଲ୍ ଗେଟ୍ ପାଖୁ ଦୌଡ଼ି ଯାଇ ବୁଡ଼ାକୁ ଚାହିଁଲା । ତାର ପିଲାମନ ଅସ୍ଥିର ହୋଇଉଠିଲା । ସେ ହାତଠାରି ଡାକିଲେ ହେ, ବୁଢ଼ା ଶୁଣ ?

ଭିକାରୀ ପଧାନ ପଛକୁ ଚାହିଁ ଦେଲା । ସାତବର୍ଷର ଗୁଲୁଗୁଲିଆ ଝିଅ ତାକୁ ଡାକୁଛି । ସେ, ପାଖକୁ ଆସି ପଚାରିଲା ମା, କାହିଁ ଡାକୁଛୁ ?

ବୁଢ଼ା ତୁ କେତେ ସୁନ୍ଦର ଗୀତ ଗାଉଛୁ, କୁଆଡ଼େ ଯାଉଛୁ । ଆଉ ଟିକେ ଗୀତ ଗାଇବୁ ନାହିଁ ? ଭିକାରୀ ପଧାନ ହସି ଦେଇ କହିଲା ହଁ ମା, ଆଜି କାମକୁ ଯାଉଛି । ଫେରିଲା ବେଳକୁ ଆସି ଗାଇବି ।

ତାର ଯିବା ବାଟକୁ ମିନା ଚାହିଁଛି । ପ୍ରତିଦିନ ବୁଢ଼ା କାମରୁ ଫେରିଲେ, ଇଞ୍ଜିନିଅର୍ଙ୍କ ଗେଟ ପାଖକୁ ଯାଏ । ମୀନା ତାର ଆସିବା ବାଟକୁ ଚାହିଁ ରହିଥାଏ । ସେ ଝିଅକୁ ପାଖରେ ବସାଇ ଭଜନ ଦିପଦ ଗାଇ ଘରକୁ ଫେରେ ।

ଭିକାରୀ ପଧାନ ଭଜନ ଗାଇ ରାସ୍ତାରେ ଗଲାବେଳେ ଯିଏ ସେ ବାଟେ ଯାଏ । ବୁଢ଼ା ଆଡ଼କୁ ଚାହେଁ ।

ସମସ୍ତଙ୍କ ମୁହଁରେ ଗୋଟିଏ କଥା ବୁଢ଼ାର ଭଜନ, କି ସୁନ୍ଦର, କି ମଧୁର ।

ଆଜକୁ ଦୁଇମାସ ହେଲା ବୁଢ଼ାର ଦେହ ଭାରି ଖରାପ । ଭୀଷଣ କାଶ । କାଶି, କାଶି ଦେହ ତାର ଲୋଚା ହୋଇ ଯାଉଛି । କାମକୁ ଯାଇ ପାରୁନାହିଁ । ଯାହା ଦୁଇପଇସା ରଖିଥିଲା ଘରେ ବସିସବୁ ସରିଲାଣି । ତାକୁ ଆଉ ବୁଦ୍ଧି ଦିଶୁ ନାହିଁ ।

ଶେଷକୁ, ବୁଢ଼ା ଦିନେ ଖାଇଲେ ଦି ଦିନ ଓପାସ ରହିଲା । ସାଇ ପଡ଼ିଶା ବୁଢ଼ାର ଏ ଅବସ୍ଥା ଦେଖି ତାକୁ ହସ୍ପିଟାଲ୍ରେ ରଖି ଦେଇ ଆସିଲେ ।

ଭିକାରୀପଧାନ ବୁଢ଼ା ନିତି ସନ୍ଧ୍ୟା ସମୟରେ ହସପିଟାଲ୍‌ର ଖଟ ଉପରେ ବସି ଅତି କରୁଣ ସ୍ୱରରେ ଭଜନ ଗାଏ । ସବୁ ରୋଗୀ ଯାକ,

ଡାକ୍ତର, ନର୍ସ ବୁଢ଼ା ପାଖରେ ଆସି ରୁଣ୍ଡ ହୁଅନ୍ତି । ସମସ୍ତଙ୍କ ମହୁଁରେ ଗୋଟିଏ କଥା, ଆହାଃ ବୁଢ଼ା କି ସୁନ୍ଦର ଗାଉଛି ?

ଜାନୁୟାରି ଏକ ତାରିଖ, ଆଜି ସମସ୍ତଙ୍କର ଆନନ୍ଦର ଦିନ । କିନ୍ତୁ ଭିକାରୀ ପଧାନ ମନଟିକୁ ମାରି ତାର ବେଡ୍ ଉପରେ ବସିଥାଏ ।

ଡକ୍ଟର ଅବନିବାବୁ ହଠାତ୍ ଭିତରକୁ ପଶିଆସି ବୁଢ଼ାକୁ ହଲାଇ ଦେଇ କହିଲେ ବୁଢ଼ା ବାବୁ, ଆଜି ବଡ଼ଦିନ ଭଜନଟିଏ ହଉ ?

ଭିକାରୀ ପଧାନ ପାକୁଆ ପାଟିରେ ହସି ଦେଇ କହିଲା - ବାବୁ ସନ୍ଧ୍ୟାବେଳକୁ ଗାଇବା ।

ସନ୍ଧ୍ୟା ଆଠଟା ହସପିଟାଲ୍‌ରେ ଗହଳି । ଭିକାରୀ ପଧାନ ତାର ବେଡ଼୍ ଉପରେ ବସି ଅତି କରୁଣ ସ୍ୱରରେ ଗୀତ ଗାଉଛି । ଡକ୍ଟର ଅବନିବାବୁ, ହାଉସର୍ଜନ, ନର୍ସ କେତେକ ରୋଗୀ ବୁଢ଼ା ପାଖରେ ଜମା ହୋଇ ଶୁଣୁଛନ୍ତି ।

ବୁଢ଼ାର ହଠାତ୍ କାଶ ଉଠିଲା । କାଶି କାଶି ଝଲକାଏ ରକ୍ତ ତା ପାଟି ଭିତରୁ ଗଳି ପଡ଼ିଲା ।

ଡାକ୍ତର, ହାଉସ୍ ସର୍ଜନ, ନର୍ସ ସମସ୍ତେ ବୁଢ଼ାକୁ ଧରି ଶୁଆଇ ଦେଲେ ।

ଇଞ୍ଜେକ୍ସନ ଅକ୍ସିଜନ ଚାଲିଲା, ମାତ୍ର କିଛି ଫଳ ହେଲା ନାହିଁ

ନିମିଷକରେ ସେ, ଚିରଦିନ ପାଇଁ ଆଖି ବୁଜିଲା ।

ସମସ୍ତଙ୍କ ମୁହଁରେ ଗୋଟିଏ କଥା କି ସୁନ୍ଦର ତା ଭଜନ !



# ଶେଷ ସ୍ମୃତି

ଓହୋ ରାତି ଆଠଟା ହେଲାଣି ଆସିବାକୁ ନାହାଁନ୍ତି ଅଫିସରେ କଣ ଏତେ କାମ ?

କାର୍‌ଟା ଆସିବା ଶବ୍ଦ ଶୁଣି, ସୌଦାମିନୀ ଦାଣ୍ଡକୁ ଗଲେ। କଣ ଏତେବେଳ ପର୍ଯ୍ୟନ୍ତ ଅଫିସରେ କାମ ଚାଲିଥିଲା ଜଳଖିଆ ଖାଇବ କେତେବେଳକୁ ?

ପ୍ରମୋଦ ବାବୁ ହସି ଦେଲେ, କି ହୋ, ଇଏ କଣ ଘରେ ବସି ରନ୍ଧା ବଢ଼ା ଖାଇବା କାମ। ଇଞ୍ଜିନିଅର ଲୋକଙ୍କର କଣ କାମ ତୁମେ ଏଥିରୁ ଜାଣୁଥିବ ?

- ହଉ ଆସ, ଜଳଖିଆ ଖାଇବ। କଣ ତୁମେ ବି ଏ ପର୍ଯ୍ୟନ୍ତ ଖାଇନା ? ବୁବୁ ଖାଇଲାଣି ?

- ହଁ

- ହଉ ମୁଁ ମୁହଁ ହାତ ଧୋଇ ଆସୁଛି ତୁମେ ବାଢ଼ ?

ସୌଦାମିନୀ ଡାଇନିଂ ଟେବୁଲ୍ ଉପରେ ଜଳଖିଆ ଆଣି ଥୋଇଲେ। ବୁବୁ ଟାଣି, ଟାଣି ଆଣି ଡାଇନିଂ ଟେବୁଲ୍ ପାଖରେ ପ୍ରମୋଦ ବାବୁଙ୍କୁ ବସାଇ ଦେଲା। ମମି, ବାପା ଆସିଲେଣି ?

ସେ ସ୍ୱାମୀଙ୍କୁ ଜଳଖିଆ ବାଢ଼ି ଦେଲେ।

ସୌଦାମିନି, ପ୍ରମୋଦ ବାବୁ ଖାଇ ବସିଛନ୍ତି। ବୁବୁ ପାଖରେ ବସିଛି।

ମିନି ଖାଇସାରି ଗିନାରେ ଖିରି ଆଣି ଚାମୁଚରେ ପୁଅକୁ ଖୋଇବାରେ ବେସ୍ତ।

ପ୍ରମୋଦବାବୁ ପୁଅକୁ ଚାହିଁଛନ୍ତି - ଆଖି ତାଙ୍କର ଛଳ ଛଳ ।

ମିନି ସ୍ୱାମୀଙ୍କ ମୁହଁକୁ ଚାହିଁ ବିସ୍ମିତ ହୋଇପଡ଼ିଲା । ତୁମର, କଣ ହୋଇଛି, କାହିଁକି କାନ୍ଦୁଛ ?

- ନାଁ କିଛି ନାହିଁ ।

- ମୋତେ କହିବ ନାହିଁ ?

- ଆଚ୍ଛା ମୋ, ଅଭାବଟା ଯଦି ମୁଁ କହେ, ତୁମେ କଣ, ପୂରଣ କରି ପାରିବ ?

- ତୁମର ଅଭାବଟା କଣ ମୋର ଜାଣିବାର ଅଧିକାର ନାହିଁ । ତୁମକୁ ମୋରାଣ, କୁହ ?

- ମିନି ଶୁଣ ? ତୁମେ ବାଧ୍ୟ କରିବାରୁ ମୋ ଦୁଃଖ କହୁଛି । ... ତୁମେ ଯେତେବେଳେ ବୁବୁକୁ ଖୁଆଅ ମୋର ମା କଥା ମନେପଡ଼େ । ମୁଁ ପିଲା ହୋଇଥିଲି । ମୋ ମା, ମୋତେ ଏମିତି କେତେ ସ୍ନେହକରି ଖୁଆଉଥିଲା । ମାତ୍ର ଖୁବ୍ କମ୍ ଦିନରେ ମା, ମୋତେ ଛାଡ଼ି ଚାଲିଗଲା । ତାର ଯେଉଁ ସ୍ନେହ କିଏ ଭୁଲି ପାରିବ ? କଥାରେ ଅଛି ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସି ।

ମାର ସ୍ନେହ ଅତୁଳନୀୟ ! ତାକୁ ତୁଳନା କରିହୁଏ ନାହିଁ ମିନି, ସେ ଅଭାବଟା କେହି ପୂରଣ କରିପାରିବେ କି ? କହୁଥାନ୍ତି ଆଖିରୁ ତାଙ୍କର ଲୁହ ଗଡ଼ି ଚାଲିଥାଏ ।

ସେହିଦିନଠାରୁ ମିନି ସ୍ୱାମୀଙ୍କ ଆଗରେ ପୁଅକୁ ଖୁଆଏ ନାହିଁ ।

ପ୍ରମୋଦ ବାବୁ ଶିବଭକ୍ତ ସେ, ସୋମବାର । ଜାଗର ଉପବାସ କରନ୍ତି ।

ସେ ଶୁଣିଛନ୍ତି ଧବଳେଶ୍ୱର ବଡ଼ ମନ୍ଦିର । ଡଙ୍ଗାରେ ନଈପାରି ହୋଇ ଯିବାକୁ ପଡ଼େ । ସେ ସ୍ତ୍ରୀକୁ କହିଲେ, ଛୁଟିଦିନ ହେଉ ଧବଳେଶ୍ୱର ଯିବା କଣ କହୁଛ ?

ହଁ ମୁଁ ଭାବିଥିଲି ତୁମକୁ କହିବି ଧବଳେଶ୍ୱର ଯିବା ପାଇଁ।

ଦିନ ତିନିଟା ପ୍ରମୋଦବାବୁ ଡାକି, ଡାକି, ଘର ଭିତରକୁ ପଶିଗଲେ। ମିନି କୁଆଡ଼େ ଗଲ ?

କଣ, ଆଜି ଏତେ ଶୀଘ୍ର ଆସିଲଣି ଅଫିସରୁ।

ହଁ ଆସିଲି କହିବାକୁ କାଲି, ମୋର ଜଣେ ସାଙ୍ଗ ତା ପିଲାମାନଙ୍କୁ ନେଇ ଧବଳେଶ୍ୱର ଯାଉଛି। ଆମକୁ ଡାକୁଛି, ଯିବାକୁ। ଆମେ ସାଙ୍ଗ ହୋଇ ଯିବା। କଦଳୀ, ଦୁଧ, ନଡ଼ିଆ ସବୁ ଠିକ୍ କରିଥବ ?

ନାଁ ମୁଁ ଯିବିନାହିଁ।

କାହିଁକି ?

କାଲି ରାତିରେ ମୁଁ ଖରାପ ସ୍ୱପ୍ନ ଦେଖିଛି ଆମେ ଯିବା ନାହିଁ।

ମିନି ଶୁଣ । ସ୍ୱପ୍ନ କଥାଟା କଣ ସତ ହୁଏ ? ତୁମକୁ ମୋ ରାଣ ଯିବାକୁ ପଡ଼ିବ।

ସେ ସ୍ୱାମୀଙ୍କ କଥା ଭାଙ୍ଗି ପାରିଲା ନାହିଁ। ରାତିରେ ଦୁଧ, କଦଳୀ, ନଡ଼ିଆ ସବୁ ଆଣି ରଖିଲା।

ରାତି ପାହିଲା, ମିନି ତର ତର ହୋଇ ଘର କାମ ସାରିଦେଲା। ଦୁଇବନ୍ଧୁ ମିଶି ଧବଳେଶ୍ୱର ବାହାରିଲେ। ମନରେ ଆଜି ତାଙ୍କର କେତେ ଖୁସି କେତେ ଆନନ୍ଦ।

ନଈକୂଳ ପାଖରେ ପହଞ୍ଚି ଦୁଇଟା ଡଙ୍ଗା କରି ମନ୍ଦିରକୁ ସମସ୍ତେ ଗଲେ। ମନ୍ଦିରରେ ପୂଜା ସାରି। ଖାଇପିଇ ଆନନ୍ଦରେ ଡଙ୍ଗାରେ ବସିଲେ, ଘରକୁ ଫେରିବା ପାଇଁ।

ବୁବୁ କାନ୍ଦିଲା। ବାପା, ମୁଁ ତୁମ ପାଖରେ ବସିବି ?

ହଉ, ଆ ।

ବୁବୁ ବସିଲା, ପ୍ରମୋଦବାବୁଙ୍କ ଡଙ୍ଗାରେ । ତାଙ୍କ ସ୍ତ୍ରୀ ଆର ଡଙ୍ଗାରେ ବସିଲେ । ନଈ ଭିତରେ ଡଙ୍ଗା ଦୁଇଟି ଚାଲିଛି ।

ବୁବୁର ମନରେ ଆନନ୍ଦର ଢେଉ ଖେଳିଯାଉଛି । ସେ, ଆଜି ପ୍ରଥମ ଡଙ୍ଗାରେ ବସିଛି । ତାକୁ ଯେପରି ଲାଗୁଛି, ନଈଟି ତାର ଜୀବନର ସାଥି । ସେ, ଡଙ୍ଗାରେ ବସି ହାତରେ ପାଣିକୁ ଚହଲଉଛି ।

ସୂର୍ଯ୍ୟ ଅସ୍ତ ହବା ଉପରେ । ତାର ସୁନେଲି ରଙ୍ଗର କିରଣ ପାଣି ଭିତରେ ଚହଲୁଛି । ବୁବୁ ଆଶ୍ଚର୍ଯ୍ୟ ହୋଇ ପାଣି ଭିତରକୁ ଚାହିଁଛି ।

ହଠାତ୍ ଆକାଶ ମେଘାଛନ୍ନ । ସୁଲୁ ସୁଲିଆ ପବନ ଧିରେ । ଧିରେ ଅସ୍ଥିର ଗତିରେ ଆଗେଇ ଚାଲିଛି । ପକ୍ଷୀଗୁଡ଼ିକ ଜୀବନ ବିକଳରେ ନିଜ କୁଟୀରକୁ ଚାଲିଛନ୍ତି ।

ନାଉରୀ ପବନକୁ ଦେଖି ବିବ୍ରତ । ସେ କିପରି ଡଙ୍ଗାଟିକୁ ନେଇ କୂଳରେ ଲଗାଇବ । ହେ ପ୍ରଭୁ ତୁମେ ରକ୍ଷା କର ?

ବୁବୁର ଗୋଡ଼ରେ ପାଣି ବାଜିଲା । ବାପା, ପାଣି ?

ପ୍ରମୋଦ ବାବୁ ଚାହିଁ ଦେଲେ ଡଙ୍ଗା ଭିତରେ ପାଣି ଆସ୍ତେ ଆସ୍ତେ ପଶୁଛି । ସେ ନାଉରୀ ଉପରକୁ ପାଟି କଲେ । ଇରେ ଚଞ୍ଚଳ ଚଲା । ଡଙ୍ଗା ଭିତରେ ପାଣି ପଶୁଛି ? ଦେଖେ ଆର ଡଙ୍ଗା ପହଞ୍ଚିବାକୁ ଆଉ ଅଳ୍ପବାଟ, ତୁ ଏମିତି କଣ କାତ ମାରୁଛୁ?

- କଣ କରିବି ଆଜ୍ଞା, ପ୍ରଭୁ ଭରସା ।

ପବନ, ବର୍ଷା ଘଡ଼ଘଡ଼ିରେ ନଈ ଭିତର କମ୍ପିଯାଉଛି । ନାଉରୀର ପିଣ୍ଡରେ ପ୍ରାଣ ନାହିଁ । ସେ କାତ ମାରୁଛି ଜୀବନ ବିକଳରେ । କାତ ପାଉନାହିଁ । ଡଙ୍ଗାଟି ଟଳମଟଳ । ସମସ୍ତଙ୍କ ଦେହ ହାତ ବର୍ଷା ପାଣିରେ କୋହ୍ଲମାରି ଯାଉଛି ।

ଚାହୁଁ ଚାହୁଁ ଡଙ୍ଗାଟି ଗଣ୍ଡ ଭିତରେ ପଡ଼ିଗଲା ।

ବୁବୁ ପ୍ରମୋଦ ବାବୁଙ୍କୁ ଜାବୁଡ଼ି ଧରିଛି । ସମସ୍ତେ ଭୟ ଭିତରେ ପ୍ରଭୁଙ୍କୁ ଡାକୁଛନ୍ତି ।

ନିମିଷକେ ଡଙ୍ଗାଟି ବୁଡ଼ିଗଲା ଯେ କୁଆଡ଼େ ଛିନ୍‌ଛତର ହୋଇଗଲେ ।

ପ୍ରମୋଦ ବାବୁଙ୍କ ହାତରୁ ବୁବୁ ଖସିଗଲା ସେହି ନଈର ଅତଳ ଗର୍ଭକୁ ।

ପ୍ରମୋଦ ବାବୁ ଚିତ୍କାର କରି ଉଠିଲେ ବାପା ବୁବୁରେ ? ସେଇ ତାଙ୍କର ଶେଷ ଡାକ । ପ୍ରମୋଦ ବାବୁ ଆଉ ନଈ ଭିତରୁ ଉଠି ନାହାନ୍ତି ।



# ବାତ୍ୟାର ବିଭୀଷିକା

ରଘୁନନ୍ଦନ ଅବସର ନେଇ ଭୁବନେଶ୍ୱର ନିଜ ଘରେ ରହିଲେ । ଝିଅ ଯୋଇଁ ପୁଅ ବୋହୁ ସମସ୍ତେ ବାହାରେ । ସାନପୁଅ ସାନଝିଅ ଥାଆନ୍ତି ବାହାରେ । ସାନପୁଅ ଥାଏ କୋରାପୁଟ ପାଖରେ ଥାପର କମ୍ପାନୀରେ । ସାନଝିଅ ଥାଏ ଲକ୍ଷ୍ନୌ ପାଖରେ । ରଘୁନନ୍ଦନଙ୍କ ସ୍ତ୍ରୀ ରାଧିକା ଯାଇଥିଲେ ଛାଡ଼ିବା ପାଇଁ - ପୁଅ ପାଖରେ ଆଠ ଦଶ ଦିନ ରହି ବହୁତ ଦର୍ଶନୀୟ ଯାଗା ବୁଲାବୁଲି କରି ଘରକୁ ଫେରିଲେ । ରଘୁନନ୍ଦନ ସେହି ଉଦାର ସାହାଯ୍ୟକାରୀ । କେବଳ ସେତିକି ନୁହେଁ ବାତ୍ୟା ବନ୍ୟା ହେଲେ ଗାଁ ଗଣ୍ଡାବୁଲି ବାଣ୍ଟନ୍ତି । ଗାଁ ତାଙ୍କର ଅତି ପ୍ରିୟ ।

ରାଧିକା ଦିନେ ସ୍ୱାମୀଙ୍କୁ କହିଲେ, ଚାଲନା ପୁଅ ପାଖକୁ ଯିବା । ଘରେ ତ ପୁଅ ବୋହୂ ସମସ୍ତେ ଅଛନ୍ତି । ଗଲାରୁ ତୁମ ପୁଅ ବୋହୁ ମନଖରାପ କରୁଛନ୍ତି । ଘରେ ସବୁବେଳେ ରହିଲେ କଣ ଭଲ ? ତାଙ୍କ ପାଖକୁ ଯିବାନି ତାଙ୍କ ସ୍ନେହ ଶ୍ରଦ୍ଧା ରହିବ କିପରି ? ଝିଅ ଡାକିଲେ ବି ଯିବନି । ତୁମେ ଯିବନିକି ତୁମ ଲାଗି ମୁଁ ଯିବିନି, ଏତକ କହି ରାଧିକା କାନ୍ଦି ପକାଇଲେ । ରଘୁନନ୍ଦନ ସ୍ତ୍ରୀ କଥା ଶୁଣି ହସି ହସି ଗଡ଼ିଗଲେ କହିଲେ - କାନ୍ଦୁଛ କଣ ? ମୁଁ ନଗଲେ କଣ ହେଲା । ବୋହୁମାନେ ଅଛନ୍ତି ତାଙ୍କୁ ସାଙ୍ଗରେ ନେଇ ଯାଅ ?

ରଘୁନନ୍ଦନ ଘରଛଡ଼ା କୁଆଡ଼େ ଯିବାକୁ ତାଙ୍କୁ ଭଲ ଲାଗେନି । ସେ କହିଲେ ସ୍ତ୍ରୀକୁ - ମୁଁ ଗଲେ ତୁମେ ରହିବ, ତୁମେ ଗଲେ ମୁଁ ରହିବି । ଆମେ ବୁଢ଼ାବୁଢ଼ୀ ହେଲେ ସୁବିଧା ଦେଖିଯିବା ବ୍ୟସ୍ତ କାହିଁକି ? ଗଲେ ଠାକୁର ପୂଜା କିଏ କରିବ ।

୧୯୯୯ ମସିହା ଦୁର୍ଗାପୂଜା ଥାଏ ୬/୭ ଦିନ । ରାଧିକା ମନେ ମନେ ଠିକ୍ କଲେ ଏହି ଦୁର୍ଗାଅଷ୍ଟମି ସାରି ପୁଅପାଖକୁ ଯିବେ । ରଘୁନନ୍ଦନ ଶୁଣି କହିଲେ - କଣ ପୁଅ ପାଖକୁ ଯାଉଛ, କାହାକୁ ସାଙ୍ଗରେ ନେଇ ? ତୁମେ ତ ନାହିଁ କଲ ଯିବାକୁ - ବୋହୁକୁ ନାତୁଣିକୁ ନେଇ ଯିବ ? ହଉ ଯାଅ ଭଲକଥା । ନାତୁଣୀ ଖୁସି ହୋଇଗଲା କକେଇ ପାଖକୁ ଯିବବୋଲି ।

ରାଧିକା କହିଲେ ଯିବୁ ଠିକ୍ କରିଛୁ ବାପ ପୁଅ ଖାଇବ କିପରି ? ରଘୁନନ୍ଦନ କହିଲେ ପୂର୍ଣ୍ଣିମା ରାନ୍ଧିଦେବ । ସେ ଝିଅଟି ଝିଅପରି ଘରେ ଥାଏ । କାମଦାମରେ ସାହାଯ୍ୟକରେ । ରଘୁନନ୍ଦନ ସେ ଝିଅକୁ ଭଲପାନ୍ତି । ତାଙ୍କ ଘରର ପଛପଟେ ଘର ଦେଇଛନ୍ତି, ପୂର୍ଣ୍ଣିମାର ମା, ବାପ, ଭାଇ ସମସ୍ତେ ରହନ୍ତି ।

ରଘୁନନ୍ଦନ ସାତଟା ବାଜିଲେ ଟିଭିରେ ନିଉଜ୍ ଶୁଣନ୍ତି । ସେ ଦିନ ଚାରିଆଡ଼େ ଅନ୍ଧାର । ରାତି ନିଉଜ୍‌ରେ ସେ ଶୁଣିଲେ ଲଘୁଚାପ ସୃଷ୍ଟି ହୋଇଛି ସମୁଦ୍ର ଅତି ଦୁର୍ବଳ । ଗୋପାଳପୁର ଦେଇ ଅତିକ୍ରମ କରୁଛି ଦକ୍ଷିଣ ଦେଇ ଯିବ । ପବନ ୧୨୫ ବେଗରେ ବୋହିବ ଟ୍ରେନ୍ ବସ୍ ସବୁ ବନ୍ଦ ହୋଇଯିବ । ରଘୁନନ୍ଦନ ଡାକଛାଡ଼ିଲେ ସ୍ତ୍ରୀକୁ ଶୁଣିବ ଆସ । ବାହାରିଛ କଣ ଯିବାକୁ । ଦୁଇ ଦିନ ହେଲା ବରମପୁର ପଟେ ବର୍ଷା ପବନ ହୋଇ ଘର ଦ୍ୱାର ଭାଙ୍ଗି ତଳେ ଶୋଇ ଦେଲାଣି । ଟ୍ରେନ୍ ବସ ସବୁବନ୍ଦ, ଯିବ କିପରି ?

ରାଧିକା କହିଲେ- ଛାଡ଼ିଗଲେ ଯିବୁ ଦୁର୍ଗା ଅଷ୍ଟମିସାରି ଦୁଇ ତିନି ଦିନ ଅଛି ଦେଖିବା କଣ ହଉଛି ? କ୍ରମେ ବର୍ଷା ପବନ ଛାଡ଼ିଗଲା । ଦୁର୍ଗାପୂଜା ଚାରିଆଡ଼େ ସକାସକି ଟ୍ରେନ୍ ମଧ୍ୟ ଚାଲିଲା । କିନ୍ତୁ ଦକ୍ଷିଣ ଲାଇନ୍ ଗାଁ ଗଣ୍ଡା ଅବସ୍ଥା ବହୁତ ଖରାପ ବାତ୍ୟାରେ ।

ରାଧିକା ବୋହୁ ନାତୁଣୀକୁ ଧରି ପୁଅ ପାଖକୁ ଯିବେ, ଟିକେଟ କଟା ହେଲା । ଦୁର୍ଗା ଅଷ୍ଟମି ସାରି ନବମଦିନ ଯିବେ ଟ୍ରେନ୍‌ରେ, ରଘୁନନ୍ଦନ ସାନପୁଅକୁ ଫୋନ୍ କଲେ କୋରାପୁଟ ଷ୍ଟେସନକୁ ଫୋନ୍ କଲେ କୋରାପୁଟ ଷ୍ଟେସନକୁ ଗାଡ଼ି ନେଇ ଆସିବାକୁ । ନବମିଦିନ ସନ୍ଧ୍ୟା ୭ଟା ବେଳକୁ ବୋହୁ ନାତୁଣୀକୁ ନେଇ ଟ୍ରେନ୍‌ରେ ଗଲେ । ବାତ୍ୟା ପାଇଁ ଗାଡ଼ି ଖୁବ୍ ଆସ୍ତେ ଆସ୍ତେ ଚାଲୁଥାଏ । କୋରାପୁଟ ଷ୍ଟେସନରେ ତା ଆରଦିନ ୧୦ଟା ବେଳକୁ ପହଞ୍ଚିବା କଥା । କିନ୍ତୁ ନଅଘଣ୍ଟା ଲେଟ୍ ଖବରରୁ ଜଣାଗଲା ।

ଘରେ ନଅଘଣ୍ଟା ଲେଟ୍ ଶୁଣି ରଘୁନନ୍ଦନ ବ୍ୟସ୍ତ ହୋଇଗଲେ ସ୍ତ୍ରୀ ପାଇଁ । ରାଧିକା ସବୁବେଳେ ପେଟ ରୋଗ ପାଇଁ ଅସୁସ୍ଥ । ସେଥିପାଇଁ କୁଆଡ଼େ ଯାଇ ପାରନ୍ତି ନାହିଁ । ଯାହା ନେଇଥିଲେ ଖାଇବା ପାଇଁ ସକାଳେ ସରିଗଲା ।

ବାଟରେ କିଛି ଖାଇବେ ନାହିଁ, ପେଟ ଚକଟି ହୋଇ ପଡୁଛି। ସାନପୁଅ ଦୁଇଥର ଆସି ଷ୍ଟେସନରୁ ଫେରିଗଲାଣି।

ଟ୍ରେନ୍ କୋରାପୁଟ ଷ୍ଟେସନରେ ପହଞ୍ଚୁ ପହଞ୍ଚୁ ରାତି ସାତଟା। ଭୁବନେଶ୍ୱରରୁ ଆଉ ଗୋଟେ ଫ୍ୟାମିଲି ମଧ୍ୟ ଓହ୍ଲାଇଲେ କୋରାପୁଟରେ। ରାଧିକା ଚାହିଁଥାନ୍ତି ପୁଅକୁ। ରାତି ଅନ୍ଧାର। ରେଲ୍ ଲାଇନ୍ ଉପରେ ଗାଡ଼ି ରହିଛି। ୩ଟା ଲାଇନ୍ ଡେଇଁଲେ ଷ୍ଟେସନକୁ ଯିବାକୁ ହେବ। ... ସେ କଣ କରିବେ। କୁଲି ନାହିଁ ଜିନିଷ ପତ୍ର ନେବାକୁ।

ରାଧିକା ସେତେବେଳକୁ ବ୍ୟସ୍ତ ହୋଇଗଲେଣି। ଉପାସରେ ଦେହହାତ କଣ ହୋଇଯାଉଛି। ପେଟ ଦରାଣ୍ଡି ପକାଉଛି। ରାଧିକା ବୋହୂନାତୁଣୀ ସବୁ ଜିନିଷ ଧରି ରେଲ୍‌ଲାଇନ୍ ପାର ହୋଇ ଷ୍ଟେସନରେ ପହଞ୍ଚିଲେ। ଅପେକ୍ଷା କଲେ ପୁଅକୁ। ସେଠାରେ ରିକ୍ସା ଅଟୋ କି ଫୋନ୍ କିଛି ନାହିଁ। ସେ ମନେ ମନେ ଭାବିଲେ କାହିଁକି ଆସିଲି।

କୋରାପୁଟରେ ଯେଉଁ ଫ୍ୟାମିଲି ଓହ୍ଲାଇଲେ ସେ ମଧ୍ୟ ତାଙ୍କ ଭାଇ ପାଖକୁ ଯାଉଥିଲେ। ତାଙ୍କର ଭାଇଗାଡ଼ି ନେଇ ଆସିବା କଥା... ସେମାନେ ରାଧିକାଙ୍କ ପାଖରେ ପହଞ୍ଚି କହିଲେ, ମାଉସୀ ଆପଣ ଯେଉଁଠିକୁ ଯିବେ ଆମେ ମଧ୍ୟ ସେଠିକି ଯିବୁ। ଆପଣମାନେ ଠିଆହୋଇଥାନ୍ତୁ। ଆମେ ବସ୍‌ଷ୍ଟାଣ୍ଡକୁ ଯାଇଛୁ। ବସ୍ ଯିବ କି କଣ ? ଯଦି ଯାଏ ଆମେ ଆସି ଆପଣମାନଙ୍କୁ ନେଇଯିବୁ ସାଙ୍ଗ ହୋଇଯିବା।

ତାଙ୍କ ଭାଇ ଗାଡ଼ି ନେଇ ଆସି ପହଞ୍ଚିଲେ। ଆମକୁ ଡାକିଲେ ତାଙ୍କ ଭଉଣୀ କି ଖୋଜିଲେ। ଆମେ କହିଲୁ ସେମାନେ ବସ୍‌ଷ୍ଟାଣ୍ଡକୁ ଯାଇଛନ୍ତି। ଗାଡ଼ି ଯାଇ ତାଙ୍କୁ ଆଣିଲା।

ରାଧିକା ବୋହୂ ନାତୁଣୀକୁ ଧରି ପୁଅକୁ ଅପେକ୍ଷା କରିଥାନ୍ତି। ସେମାନେ ଡାକିଲେ ଯିବା ପାଇଁ ରାଧିକା କହିଲେ ବାପା ପାଞ୍ଚମିନିଟ୍ ଅପେକ୍ଷା କରନ୍ତୁ ଯିବା ?.... ରାଧିକା ଚାହିଁଛନ୍ତି ସଂଗେ ସଂଗେ ପୁଅ ବୋହୂ ନାତୁଣୀ ଗାଡ଼ି ନେଇ ଆସି ପହଞ୍ଚିଲେ। ପୁଅକୁ ଦେଖି ରାଧିକା କାନ୍ଦି ପକାଇ କହିଲେ ବାପା ଏତେ ଡେରି କଲୁ।

.... ମୁଁ କଣ କରିବି ଦୁଇଥର ଆସି ଫେରିଗଲେଣି ।

ଯାହା ହେଉ ସମସ୍ତଙ୍କୁ ଦେଖି ରାଧିକା ଖୁସି ହୋଇଗଲେ ନାତୁଣୀକୁ ଗେହ୍ଲା କରି ପକାଇଲେ ସମସ୍ତେ ସାଙ୍ଗ ହୋଇ ଘରେ ପହଞ୍ଚିଲେ । ରାଧିକା ପୁଅ ଉପରେ ରାଗି ମୁହଁ ଶୁଖାଇ ରହିଲେ । ପୁଅ ବୋହୂ ବହୁତ ବ୍ୟସ୍ତ ହେଲେ ବହୁତ ବୁଝାବୁଝି କଲେ । ସମସ୍ତେ ଗାଧୁଆପାଧୁଆ ସାରି ଗପସପ ହୋଇ ଶୋଇବାକୁ ଗଲେ ।

ରାଧିକା ମନେ ମନେ ଭାବିଲେ ମୋ ପିଲାମାନେ କେତେ ଭଲ । ପ୍ରଭୁ ଜଗନ୍ନାଥ ତାଙ୍କୁ କୋଟି ପରମାୟୁ ଦିଅନ୍ତୁ । ତାଙ୍କ ଆଗରେ ମୋ ଦିନ ଯାଉ । ୩/୪ ଦିନ ପରେ ହେଲା କୁମାରପୂର୍ଣ୍ଣିମା... ରାଧିକା ବୋହୂମାନେ ପିଠାପଣା କରି ପୂଜାପୂଜି କରି ନାତୁଣୀମାନଙ୍କୁ ବନ୍ଦାପନା କରି ଚଉରା ପାଖରେ ଚାନ୍ଦପୂଜା କରି କବାଟ କଣରେ ଚାନ୍ଦଚକଟା ଖୁଆଇଲେ । ସମସ୍ତେ ଖିଆପିଆ କରି ଶୋଇବାକୁ  ଗଲେ । ଏମିତି ଦଶଏଗାର ଦିନ ରାଧିକା ବୋହୂ ନାତୁଣୀକୁ ଧରି ପୁଅ ପାଖରେ ରହିଲେ ବେଶୀଦିନ ବହୁତ ମଜା କରନ୍ତି ।

ପୁଅ ତାଙ୍କର ବହୁତ ଦର୍ଶନୀୟ ସ୍ଥାନ ବୁଲାଇ ଦେଖାଇଲା । ଗୁପ୍ତେଶ୍ୱର ମନ୍ଦିର, କୋରାପୁଟ ଜଗନ୍ନାଥ ମନ୍ଦିର, ସୁନାବେଡ଼ା ହରିଣ ପାର୍କ, ଜୟପୁର ଜଗନ୍ନାଥ ମନ୍ଦିର, ଜୟପୁର ରାଜବାଟି, ଶିବ ମନ୍ଦିର । ଏହିପରି ବହୁତ ଦର୍ଶନୀୟ ସ୍ଥାନ ରାଧିକାତ ଦେଖିଲେ ସବୁ ଯାଗାରେ ପୁଅର ଫଟ ଉଠାଇଲା । କହିଲା ମାଙ୍କୁ ଯାହା ଦେଖିଲୁ ନନାଙ୍କ ଆଗରେ କହିବୁ ? ରାଧିକା ଦଶ ଏଗାର ଦିନ ରହିଲା ପରେ ତାଙ୍କର ମନେ ପଡ଼ିଲା ଘରକଥା । ସେ ବ୍ୟସ୍ତ ହେଲେ ଘରକୁ ଯିବାକୁ । ନାତୁଣୀର ସ୍କୁଲ ଖୋଲିବ ଆଉ ଦୁଇଦିନ ପରେ । ପୁଅ ଟିକେଟ୍ କାଟି ଆଣିଲା ଭୁବନେଶ୍ୱର ଯିବା ଲାଗି । ତା ଆରଦିନ ୧୦ଟା ବେଳକୁ ଖାଇ ପିଇ ଟ୍ୟାକ୍ସି ଆଣିଲା ପୁଅ କୋରାପୁଟ ଷ୍ଟେସନ ଯିବା ଲାଗି । ଟ୍ୟାକ୍ସିରେ ଜିନିଷପତ୍ର ରହିଲା ରାଧିକା ବୋହୂ ନାତୁଣୀକୁ ଧରି ବସିବାକୁ ଯାଉଛନ୍ତି । ଭୁବନେଶ୍ୱରରୁ ଫୋନ୍ ଆସିଲା ପୁଅ ପାଖରୁ । ବହୁତ ଜୋରରେ ବାତ୍ୟାର ଆରମ୍ଭ ହେଲାଣି । ବୋଉକୁ, ଭାଉଜଙ୍କୁ, ପିଲାଙ୍କୁ ପଠାଇବୁ ନାହିଁ । ଟିକେଟ୍ ଫେରାଇ ଦେବ । ଘରର କବାଟ ଝର୍କା ପ୍ରାଚୀର ସବୁ ଭାଙ୍ଗି ଫୋପାଡ଼ି ଦେଲାଣି । ପ୍ରଳୟ ବାତ୍ୟା ଛାଡ଼ିଲେ ଆସିବେ । ରାଧିକା ଫେରି ଆସିଲେ ଘରକୁ ।

ଟିଭି ଖୋଲି ସମସ୍ତେ ଚାହିଁଥାନ୍ତି । ଭୁବନେଶ୍ୱର ଟାଉନ୍ ଶ୍ମଶାନ । ପବନର ଗର୍ଜନ । ବାତ୍ୟା ଛାଡ଼ିବାରେ ଦୁଇ ତିନି ଦିନ ପରେ ରାଧିକା ବୋହୂ ନାତୁଣୀକୁ ଧରି ଫେରିଲେ ଘରକୁ ? ରାଧିକା ପିଲାଙ୍କୁ ତାଙ୍କର କେତେଦିନ ହେଲା ଦେଖି ନଥିଲେ । ମନେ ମନେ ଭାବିଲେ ପିଲାଙ୍କୁ ଦେଖି ମୋର ମନରେ ଟିକେ ଶାନ୍ତି ଆସିବ । ଖବର ପାଇ ପୁଅଝିଅ ଯୋଇଁ ସକାଳୁ ଗାଡ଼ି ଧରି ଠିଆ ହୋଇଛନ୍ତି ମାଷ୍ଟର କ୍ୟାଣ୍ଟିନ ଛକ ଉପରେ । ବସ୍ ସକାଳ ୭ଟାରେ ପହଞ୍ଚିଲା ଭୁବନେଶ୍ୱର ମାଷ୍ଟରକ୍ୟାଣ୍ଟିନ ଛକ ଉପରେ । ରାଧିକା ଚାରିଆଡ଼କୁ ଚାହିଁ ବିଶ୍ୱାସ କରିପାରିଲା ନାହିଁ ଘର ଯେପରି ତାଙ୍କୁ ଲାଗୁଛି ଶ୍ମଶାନ ପରି । ପିଲାଙ୍କୁ ତାଙ୍କର ଚାହିଁ ରହିଛନ୍ତି କାଠପରି । ନନା କାହାନ୍ତି ??.. କେହି କିଛି କହିଲେ ନାହିଁ... !!! ରାଧିକା ଚାରିଆଡ଼କୁ ଆଖି ବୁଲାଇ ଆଣିଲେ ।

ପ୍ରକୃତିର ତାଣ୍ଡବ ଲୀଳା ଦେଖି ଯେପରି ଜଡ଼ ପାଲଟି ଯାଇଥିଲେ ରାଧିକା !



# ସର୍ବହରା

ନରେନ୍ଦ୍ର ପୁର ବଜାର କଡ଼କୁ ଖପରଲି ଘର ଦୁଇବଖରା । ଚୈତନ୍ୟ ବାବୁ ଦଶଟଙ୍କା ଦେଇ ସେ ଘରେ ରହନ୍ତି । ମାଷ୍ଟ୍ର ହୋଇ ଯାହାପାରନ୍ତି, ଦୁଇପ୍ରାଣୀ, ଛଅମାସର ପୁଅ ଦୁଃଖ ସୁଖରେ ଚଳିଯାଆନ୍ତି ।

ନରେନ୍ଦ୍ର ପୁରରୁ ତାଙ୍କର ଗାଁ ପାଞ୍ଚଛଅ ମାଇଲ । ଚୈତନ୍ୟବାବୁ ମଝିରେ ମଝିରେ ଗାଁକୁ ଯାଇ ହାନି, ଲାଭ, ଭଲ ମନ୍ଦ ସବୁବୁଝନ୍ତି । ସେ, ଅତି ଶାନ୍ତ, ଶିଷ୍ଟ, ସରଳ ପ୍ରକୃତିର ଲୋକ । କାହାର ଦୁଃଖ ଦେଖିଲେ ସହିପାରନ୍ତି ନାହିଁ । କିନ୍ତୁ ତାଙ୍କ ସ୍ତ୍ରୀ ଠିକ୍ ଓଲଟା ।

ରୁକ୍ମିଣୀ ଦେବୀଙ୍କ ବାପଘର ଥିଲାବାଲା । ସେ ସବୁବେଳେ ଚାହୁଁଥିଲେ ଭଲ ଖାଇବା ଏବଂ ଭଲ ପିନ୍ଧିବା । ଗାଁରୁ କିଏ ଆସିବା, ଯିବା ତାଙ୍କୁ ଭଲ ଲାଗୁନଥିଲା । ଗାଁର କେହି ତାଙ୍କ ଘରକୁ ପାଦ ପକାନ୍ତି ନାହିଁ ।

ଚନ୍ଦରାକୁ ଯେତେବେଳେ ନଅବର୍ଷ । ବାପ ତାର ଗରିବ । ସେ ବର୍ଷ ପଡ଼ିଲା ଦୁର୍ଭିକ୍ଷ । ବିଲବାଡ଼ି ଫାଟି ଆଁ କଲା । ଚାରିଆଡ଼େ ମରୁଡ଼ି । ସବୁ ଆଡ଼େ ହା, ହା କାର ପଡ଼ିଲା ।

ଚୈତନ୍ୟବାବୁ ଗାଁକୁ ଯାଇଥାନ୍ତି ବାଟରେ ସନିଆ ଦେଖାହେଲା । "କିରେ, ସନି, କିପରି ଚଳୁଛୁ" ?

ସନିଆ କାନ୍ଦିପକାଇଲା । "ଆଜ୍ଞା - କଣ ଆଉ ଚଳିବି ? ଖାଇବାକୁ ନପାଇ ଗୋଟିଏ ପୁଅ ଗଲା । ଆଉ ଗୋଟିଏ ପୁଅ ଅଛି । ବାବୁ । ତୁମ ହାତଧରୁଛି, ତାକୁ ନେଇ ଯାଅନ୍ତୁ" । ସେ କାନ୍ଦି କାନ୍ଦି ପୁଅକୁ ଆଣି ଛାଡ଼ି ଦେଇଗଲା ।

ଚୈତନ୍ୟବାବୁ ମନାକରି ପାରିଲେ ନାହିଁ । ତାକୁ ବୁଝାବୁଝି କରି ଚନ୍ଦରାକୁ ନେଇ ନରେନ୍ଦ୍ରପୁରେ ପହଞ୍ଚିଲେ ।

ରୁକ୍ମିଣୀଦେବୀ ଚନ୍ଦରାକୁ ଦେଖିରାଗରେ ସିନ୍ଦୁର ଟୋପା । ଯେତେବେଳେ ସ୍ୱାମୀଙ୍କ ଉପରେ ରାଗନ୍ତି ସାକ୍ଷାତ ଚଣ୍ଡିମୂର୍ତ୍ତି ।

ସେ ଗର୍ଜି ଉଠିଲେ । କି ହୋ ତୁମକୁ କିଏ କହିଲା, ଏ ପିଲାକୁ ଆଣିବାକୁ । ମାଷ୍ଟ୍ର ଚାକିରୀ କରି ଯୋଉ ରୋଜଗାର । ସେଥିରେ ପୁଣି ଗୋଟା, ଗୋଟା କରି ଘରେ ପୁରାଉଛ ? ମୁଁ ଚଳାଇ ପାରିବି ନାହିଁ ।

ଚନ୍ଦରା ଚାହୁଁଛି ବାବୁଙ୍କ ମୁହଁକୁ । ଚୈତନ୍ୟ ବାବୁ ସ୍ତ୍ରୀଙ୍କୁ ବୁଝାଇଲେ, ଗରିବ ପିଲାଟା ମରିଯାଇଥାନ୍ତା । ତା ବାପ, କାନ୍ଦି କରି ପଠାଇଲା । ମୁଠାଏ ଖାଇ କାମଧନ୍ଦା କରିବ । ଚଳେଇ ନପାରିଲେ ଗାଁରେ ନେଇ ଛାଡ଼ିଆସିବି । ନଇ ନଦେଖଣୁ ନଙ୍ଗଳା କାହିଁକି ?

ରୁକ୍ମଣୀ ଦେବୀ ଆଉକିଛି ନକହି, ସେଠାରୁ ଚାଲିଗଲେ ।

ଚନ୍ଦରା ବଜାର ହାଟ, ବାସନ ମଜା, ଘରଦ୍ୱାର ଝଟାପଟା ସବୁକାମ କରେ । ଯେତେକାମ କଲେ ମଧ୍ୟ ରୁକ୍ମିଣୀ ଦେବୀ କଥାକୁ ଲଥା ବାହାର କରି ତା ଉପରେ ରାଗି ଉଠନ୍ତି । ବାସନର କେଉଁଠି କଳା ଲାଗିଛି ତ, ଘରେ କେଉଁଠି ମଧ୍ୟ ଅଲଗା ରହିଛି । ଟିକେ କଥାରେ ସ୍ୱାମୀଙ୍କ ଉପରେ ଗାଳିଟା ହୁଏ । ଚନ୍ଦରା ମଧ୍ୟ ତା ଦେହରେ ଭାଗନିଏ ।

ଏହିପରି ସବୁଦିନ ଚାଲିଥାଏ । ଚୈତନ୍ୟବାବୁ କିଛି ଶୁଣନ୍ତି ନାହିଁ ।

"ଚନ୍ଦରା, ରେ ଚନ୍ଦରା, ପୋଡ଼ାମୁହାଁଟା କେତେବେଳୁ ଗଲାଣି ବଜାରକୁ ଏପର୍ଯ୍ୟନ୍ତ ଆସିନାହିଁ । କେତେବେଳେ ମୁଁ କଣକରିବି । ଏ ପିଲାଟା ମୋତେ ଖାଇ ଯାଉଛି ଓ ହୋଃ ଏତକ କହି ରୁକ୍ମିଣୀ ଦେବୀ ବାପିକୁ କଚାଡ଼ିଦେଲେ । ପିଲାଟା ରାହାଧରି କାନ୍ଦୁଛି ।...........

ଚୈତନ୍ୟବାବୁ ଗାଧୋଇ ଫୁଲଚାଙ୍ଗୁଡ଼ି ଧରି ପୂଜାକରିବାକୁ ବାହାରିଛନ୍ତି । ସେ, ସ୍ତ୍ରୀର ପାଟିରେ ବିରକ୍ତ ହୋଇ ଉଠିଲେ, କି ହୋ, ବାପିବୋଉ, କାହିଁକି ସକାଳୁ ଏତେ ବଡ଼ପାଟିଟା କରୁଛ, ମଣିଷକୁ କଣ ପୂଜା, କରାଇ ହେବନାହିଁ ?

ସେ ସ୍ୱାମୀଙ୍କ ଉପରକୁ ପାଟିକରି ଉଠିଲେ, କି, ହୋ, ମୁଁ, କଣ କହିଲି ଯେ, ତୁମ ପୂଜା, ବନ୍ଦ ହୋଇଗଲା । ଯେଉଁ ଗୁଣବନ୍ତ ଚାକର ରଖିଛ, ହଉ, ଆଜି କେମିତି ଗେଫାମାରି ସ୍କୁଲକୁଯିବ ମୁଁ ଦେଖିବି ? ମାଙ୍କଡ଼ ଟୋକାଖଣ୍ଡକ ଯାଇଛି ଦୁଇଘଣ୍ଟା ହେଲାଣି ତାର ଦେଖାଦର୍ଶନ ନାହିଁ ।

ଚନ୍ଦରା ଗୋଟିଏ ହାତରେ ଧରିଛି ଡାଲିଠୁଙ୍ଗା । ଦାଣ୍ଡପିଣ୍ଡାରୁ ଘରଭିତରକୁ ଗୋଡ଼ଦେଇଛି, ରୁକ୍ମିଣୀଦେବୀ ତା ଉପରକୁ ଚିହିଁକି ଉଠିଲେ, ହଇରେ, ପୋଡ଼ାମୁହାଁ ଏତେବେଳଯାକେ କୁଆଡ଼େ ଯାଇଥିଲୁ, କେଉଁଠି ମରୁଥିଲୁ ।

ଚନ୍ଦରା ସ୍ଥାଣୁପରି ଠିଆ ହୋଇ ମାଙ୍କ ମୁହଁକୁ ଚାହିଁଛି ଅପଲକ ନେତ୍ରରେ । ସେ ଗୋଟାକଯାକ ବରଡାପତ୍ର ପରି ଥରିଲା । ଆଖିରୁ ତାର ଲୁହ ଟୋପା, ଟୋପା ଗଡ଼ି ପଡ଼ିଲା ।

ଚୈତନ୍ୟବାବୁ ପୂଜାରୁ ଉଠିଛନ୍ତି । ତାଙ୍କର ଦୃଷ୍ଟି ପଡ଼ିଗଲା ଚନ୍ଦରା ଉପରେ ସେ ଥରୁଛି ଗୋଟାକଯାକ । କାନ୍ଦୁଛି କଇଁ କଇଁ ହୋଇ ।

ପତ୍ନି ଉପରକୁ ଚିଡ଼ି ଉଠିଲେ ଚୈତନ୍ୟ ବାବୁ ତୁମ ଜ୍ୱାଳାରେ ଆଉ ଏ ଘରେ କେହି ରହି ପାରିବେ ନାହିଁ ।

ସ୍ୱାମୀଙ୍କ କଥାରେ ରୁକ୍ମିଣୀ ଦେବୀଙ୍କ ରାଗ ଦୁଇଗୁଣ ବଢିଗଲା । କି, ହୋ, କଣ କହିଲ, ମୋ ଜ୍ୱାଳାରେ କେହିରହି ପାରୁନାହିଁ ? ମୋ ଭାଗ୍ୟ ଖରାପ, ତୁମ ଭଳିଆ ଲୋକର ହାତ ଧରିଛି । ଏତକ କହି ସେ କଇଁ କଇଁ ହୋଇ କାନ୍ଦିବାକୁ ଲାଗିଲେ ।.........

ଚୈତନ୍ୟବାବୁ କିଛି ନକହି, ଅଖିଆ, ଅପିଆ ସ୍କୁଲକୁ ଚାଲିଗଲେ ।

ଚନ୍ଦରା ଠିଆ ହୋଇଛି । ବାପି ଗୁରୁଣ୍ଡି ଗୁରୁଣ୍ଡି ଚନ୍ଦରା ପାଖକୁ ଆସିଲା । ସେ, ବାପିକୁ ତଳୁ ଉଠାଇ ଗେଲକଲା । ବାପି ହେଉଛି ତାର ଜୀବନର ସାଥି । ବାପିକୁ ସିଏ ନିଜ ଭାଇଠାରୁ ଅଧିକ ଭଲପାଏ । ବାପି ମଧ୍ୟ ଚନ୍ଦରାକୁ ଦେଖିଲେ ଥୟ୍ ହୋଇ ରହିପାରେ ନାହିଁ ।

ରୁକ୍ମିଣୀ ଦେବୀଙ୍କ ଦୃଷ୍ଟି ପଡ଼ିଗଲା ଚନ୍ଦରା ଉପରେ । ସେ, ବାପିକୁ ଧରି ଗେଲ କରୁଚି । ତାଙ୍କର ତାଳରୁ ତଳିପା ପର୍ଯ୍ୟନ୍ତ ଜଳି ଉଠିଲା ।

ସେ ଦୌଡ଼ିଯାଇ ଚନ୍ଦରା ଗାଲରେ ଠୋ, କିନା ଚାପୁଡ଼ାଟାଏ ପକାଇଲେ । ମୋ ପୁଅକୁ ଓହ୍ଲା ।

ମା, ଆଉ ଧରିବି ନାହିଁ ।

ଓହ୍ଲାହୁଛୁ ନାଁ ? ମାଗିଖିଆ ଟୋକା ।

ଚନ୍ଦରା ବାପିକୁ ଓହ୍ଲାଇ ଦେ ବାଡ଼ିପଟ ପିଣ୍ଡାରେ କାନ୍ଦୁଣି, ମାନ୍ଦୁଣି ହୋଇ ବସିଲା । ତାର ମନେ ପଡ଼ିଲା ବାପ ଓ ମାଁଙ୍କ କଥା । ଭୋକରେ ପେଟ ଜଳୁଛି । ଦେହରେ ତାତି ଭର୍ତ୍ତି । ସେ କାନ୍ଦି କାନ୍ଦି ବସିବା ଜାଗାରେ ଜାକି, ଜୁକି ହୋଇ ଶୋଇପଡ଼ିଛି ।

ରୁକ୍ମିଣୀଦେବୀ ଚନ୍ଦରାକୁ ଖାଇବାକୁ ଡାକିଲେ ନାହିଁ ।

ଚାରିଟା ବାଜିଲା । ଚୈତନ୍ୟବାବୁ ସ୍କୁଲରୁ ଫେରି ଡାକପକାଇଲେ, ଚନ୍ଦରାରେ ଚନ୍ଦରା, ଆରେ କୁଆଡ଼େ ଗଲୁ ?

ମଲା, ସ୍କୁଲରୁ ଫେରିଲ, ସକାଳୁ ଖାଇକରି ଯାଇନାହଁ । ଗୋଡ଼ ହାତ ଧୋଇ ଖାଇବ କଣ, ଚନ୍ଦରା ଚନ୍ଦରା, ଚନ୍ଦରା କଣ ତୁମକୁ ସ୍ୱର୍ଗକୁ ନେବ ?

ଶୁଣ ବାପିବୋଉ, ମୁଁ ଘରେ ପହଞ୍ଚୁ ପହଞ୍ଚୁ ରଗାଅ ନାହିଁ ଚନ୍ଦରା କାହିଁ ?

ରୁକ୍ମିଣୀ ଦେବୀ ମୁହଁଟାକୁ ମୋଡ଼ି ଦେଇ କହିଲେ - କେଜାଣି, ସେ କୁଆଡ଼େ ଗଲା । ମୁଁ କଣ ତାକୁ କାନିରେ ବାନ୍ଧିଛି ?

କଣ କହିଲ, ସେ ଯଦି ତୁମର ପୁଅ ହୋଇଥାନ୍ତା । ......ଚୈତନ୍ୟବାବୁଙ୍କ ମନ ଘାଣ୍ଟି ହୋଇଗଲା । ତାଙ୍କର ମନେ ପଡ଼ିଗଲା । ସେ ଯେତେବେଳେ ଗାଁରୁ ଆସିଲେ ଦରିଦ୍ର ସନିଆ ତା ପୁଅକୁ ଟେକିଦେଇଥିଲା ତାଙ୍କ ହାତରେ ।

ଚୈତନ୍ୟବାବୁଙ୍କ ମନ ଚନ୍ଦରା ପାଇଁ ଅସ୍ଥିର ହୋଇଉଠିଲା । ସେ ଦାଣ୍ଡଠାରୁ ଘର ପର୍ଯ୍ୟନ୍ତ ଅଣ୍ଡାଳି ପକାଇଲେ । ବାଡ଼ି କବାଟ ଖୋଲିଦେଇଛନ୍ତି ଦୃଷ୍ଟି ପଡ଼ିଗଲା ଚନ୍ଦରାଉପରେ । ଚନ୍ଦରା ଜାକି ଜୁକି ହୋଇ ଶୋଇ ପଡ଼ିଛି । ତା, ଆଖିରୁ ତତଲା ଲୁହ କେତେ ଠୋପା ଗଡ଼ିପଡ଼ିଛି ।

ତାଙ୍କର ପିତୃହୃଦୟ କାନ୍ଦିଉଠିଲା । ସେ ବାଡ଼ିଘରେ ତାର, ଛିଣ୍ଡାକନ୍ଥାଟି ପକାଇ, ତାକୁ ଉଠାଇ ଶୁଆଇ ଦେଲେ । ତାଙ୍କର ଦେହରେ ଥିବା ଚଦର ଖଣ୍ଡିକ ଘୋଡ଼ାଇଦେଇ, ପାଖରେ ବସି ତାର ଦେହମୁଣ୍ଡ ଆଉଁସିବାକୁ ଲାଗିଲେ ।

ତିନିଦିନ ହେଲାଣି ଚନ୍ଦରା ଦେହରେ ତାତି ଖଇ ଫୁଟୁଛି । ସେ ଆଖି ଖୋଲି ଚାହିଁବାକୁ ନାହିଁ ।

ଚୈତନ୍ୟବାବୁ ସ୍କୁଲକୁ ଯାଉନାହାନ୍ତି । ସେ ଚନ୍ଦରାକୁ ସବୁବେଳେ ଜଗି ବସିଛନ୍ତି । ତାଙ୍କ ସେବାରେ ଚନ୍ଦରାକୁ ଆଜି ଜର ଛାଡ଼ିଛି । ସେ ଚାହୁଁଛି ବାବୁଙ୍କୁ । କାନ୍ଦିକରି କହୁଛି, ବାବୁ ମୁଁ ବା ପାଖକୁ ଯିବି ?

ହେଉ ତୋ ଦେହ ଭଲ ହୋଇଯାଉ ମୁଁ ଛାଡ଼ି ଆସିବି ?

ଚନ୍ଦରା ଦେହ ଭଲ ହୋଇଗଲାଣି ।

ରାତି ପାହିଲେ ଚୈତନ୍ୟବାବୁ ଗାଁକୁ ଯିବେ ।

ଆରେ ଚନ୍ଦୁ ତୁ ପରା ଗାଁକୁ ଯିବୁ ? ଚୈତନ୍ୟବାବୁ ବଡ଼ ଆଦର ସହିତ ପଚାରିଲେ ।

କରୁଣ ଦୃଷ୍ଟିରେ ଚନ୍ଦରା ଚାହିଁଛି ବାବୁଙ୍କ ମୁହଁକୁ । କଣ କହିବ ଏ ପାଖରେ ବାପି, ସେ ପାଖରେ ବାବୁ - ପିଲାମନ ତାର ଅସ୍ଥିର ହୋଇଉଠିଲା ।

ସେ ଆଉ ସମ୍ଭାଳି ପାରିଲା ନାହିଁ ସେ - ବାବୁଙ୍କୁ ଚାହିଁ କାନ୍ଦିଉଠିଲା ।

ରୁକ୍ମିଣୀ ଦେବୀ ଚନ୍ଦରାର ଏବଂ ସ୍ୱାମୀଙ୍କର ସବୁକଥା ଶୁଣୁଥିଲେ । ସେ ରାଗ ତମ ତମ ହୋଇ ଦୌଡ଼ିଆସି ପାଟି କରି ଉଠିଲେ । ଯାଉଛୁ ନା ଏଠୁ ? ଏ ଘରେ ତୋର ଅଧିକାର ନାହିଁ ।

ଚୈତନ୍ୟବାବୁ ବୁଝାବୁଝିକରି ସେଦିନ ଚନ୍ଦରାକୁ ରଖିଲେ । ମାତ୍ର ଚନ୍ଦରା ସେଦିନ ରାତିରେ ଆଉ ଶୋଇପାରିଲା ନାହିଁ । ତାର ବାପ, ମା, ଗାଁଗଣ୍ଡା କଥା ମନେ ପଡ଼ିଲା । ସେ, କାହାକୁ କିଛି ନକହି, ଆସ୍ତେ କରି ବାଡ଼ିକବାଟ ଖୋଲି ଚାଲିଗଲା । ଆଉ ସେ କେବେ ପଛକୁ ଫେରି ଚାହିଁ ନାହିଁ ।



# ପରିଶିଷ୍ଟ

## ପରଦୁଃଖକାତର ଗୋପବନ୍ଧୁ

ମାଧ ମିଶ୍ରେ ପାଟିକରି ଉଠିଲେ - ରେ ଗୋପ, ଏ ବର୍ଷା-ପବନରେ ଅମାବାସ୍ୟା ଅନ୍ଧାରରେ - ମୁହଁକୁ ମୁହଁ ଦେଖାଯାଉନାହିଁ । ଏତେ ରାତିରେ କିଏ ଯାଏ - ରାତି ପାହୁ ।

କିନ୍ତୁ ଗୋପବନ୍ଧୁ କାହାରି କଥା ନ ଶୁଣି ସେହି ରାତିରେ ବାହାରିଲେ ବିରିବାଟୀ । ହାତରେ ଧରିଛନ୍ତି ଲଣ୍ଠନଟି, ବାଡ଼ିଟି ।

ବାଟରେ ନଈ । ନଈ ପାରିହେଲେ ବିରିବାଟୀ ଗାଁ । ଗୋପବନ୍ଧୁ ନଈ ପାଖରେ ପହଞ୍ଚି କିଛି ସମୟ ଠିଆହେଲେ ।

ନଈ ଭୀଷଣ ବଢ଼ିଛି । ଏକୂଳ ସେକୂଳ ଖାଉଛି । ତାଙ୍କର ଦେହ ହାତ ଥରିଉଠିଲା । ମନେ ପଡ଼ିଗଲା ସେହି ଲୋକମାନଙ୍କ ଦୁର୍ଦ୍ଦଶା । ସେ ଆଉ ଥୟ ଧରି ନ ପାରି ଡାକପକାଇଲେ - ସେ ନାଉରିଆ ଭାଇ, ଡଙ୍ଗା ଖୋଲ ।

- ଆଜ୍ଞା, ଏ ବର୍ଷା ପବନରେ କିପରି ଖୋଲିବି ? ଗୋପବନ୍ଧୁଙ୍କ ଆଖି ଦୁଇଟି ଲୋତକରେ ପୁର୍ଣ୍ଣ ହୋଇଗଲା । ସେ କିଛି ନ କହି ପାଣିଭିତରକୁ ପଶିଲେ ।

ଗୋପବନ୍ଧୁଙ୍କ ଲୋତକପୂର୍ଣ୍ଣ ଆଖି ଦୁଇଟା ଦେଖି ନାଉରୀ ବାଧ୍ୟ ହୋଇ ଡଙ୍ଗା ଖୋଲି ଡଙ୍ଗା ଉପରକୁ ଉଠିଲା ।

ରାତି ପାହିଲା - ଝଡ଼ିବର୍ଷା କମିଆସିଲା । ଡଙ୍ଗାଟି କୂଳରେ ଲାଗିଲା ।

ଗୋପବନ୍ଧୁ ଚାରିଆଡ଼କୁ ଚାହିଁଲେ; ବିରିବାଟୀ ଗାଁ ଭିତରେ ପାଣିସୁଅ ଛୁଟିଛି । ମଲା ମୁର୍ଦ୍ଦାର ଗୋଟାକୁ ଗୋଟା ପାଣି ଭିତରୁ ଉପରକୁ ଭାସି ଉଠୁଛନ୍ତି । ଲୋକମାନଙ୍କର ଘର ଛପର, ଆସବାବପତ୍ର ଭାସୁଛି; କିଏ କେମିତି ଗଛ ଉପରେ ବସି କରୁଣ ଦୃଷ୍ଟିରେ ଚାହୁଁଛନ୍ତି ଚାରିଆଡ଼କୁ । ତାଙ୍କୁ ଏ ବିପଦରୁ

ଉଦ୍ଧାର କରିବା ପାଇଁ ଗୋପବନ୍ଧୁଙ୍କ ଆଖିରୁ ଲୁହ ଧାର ଧାର ହୋଇ ଗଡ଼ିପଡ଼ିଲା । ସେ ଆଣିଥିବା ଚୁଡ଼ା ଗୁଡ଼ ପୁଟୁଳାକୁ ଧରି ଗାଁ ଭିତରକୁ ପଶିଲେ । ମୁର୍ଦ୍ଦାର ଗନ୍ଧରେ ନାକ ଫାଟି ପଡୁଥାଏ । ବର୍ଷାମାଡ଼ ଖାଇ ଦେହହାତ ତାଙ୍କର ବରଡ଼ାପତ୍ର ପରି ଥରି ଉଠୁଥାଏ ।

ଗୋପବନ୍ଧୁ କୌଣସି ପ୍ରକାରେ ଗାଁ ଭିତରକୁ ପଶି କେତେ ଲୋକଙ୍କୁ ଗଛ ଉପରୁ ଉଦ୍ଧାର କରି ଚୂଡ଼ା ଗୁଡ଼ ଦେଇ ବାହାରିଲେ ଚାପଡ଼ା ଗାଁକୁ ।

ବାଟରେ ଭୀଷଣ କଲେରା-ଗୋପବନ୍ଧୁଙ୍କର ସେଥିପ୍ରତି ଲକ୍ଷ୍ୟ ନାହିଁ । ଦୁଇ ଦିନ ଓପାସରେ ଗୋଡ଼କୁ ଗୋଡ଼ ବାଜୁଛି । ଚାଲିପାରୁ ନାହାନ୍ତି ।

ସେ ଗୋଟିଏ ଗଛମୂଳେ ଥକ୍କା ମରା ହୋଇ ବସିପଡ଼ିଲେ କିଛି ସମୟ ପାଇଁ ।

ଟିକେ ସମୟ ଯାଇଛି କି ନାହିଁ, ପୁଣି ଗୋଡ଼ ଦୁଇଟା ବାହାରି ପଡ଼ିଲା ତାଙ୍କର ଆଗକୁ - ସେହି ଦେଶବାସୀଙ୍କ ପାଇଁ । ଦେଶବାସୀ ତାଙ୍କୁ ଉତ୍କଳମଣି ଆଖ୍ୟା ଦେଇଛନ୍ତି ।

ଗାନ୍ଧୀଙ୍କ ଭଳି ସେ ଥିଲେ ବାସ୍ତବରେ ଜଣେ ମହାତ୍ମା ଏବଂ ସେହି ମହାତ୍ମା, ଯେ କି ଭାରତର କାହିଁକି, ସମଗ୍ର ପୃଥିବୀର ମଣି ସ୍ୱରୂପ । ଯାହାଙ୍କ କଥା ଆମ ଆଖି ଆଗରେ ନାଚି ଉଠୁଛି । ସେହି ମହାତ୍ମା ଆଜି ଆଉ ନାହାନ୍ତି; ମାତ୍ର ସେ ଦେଶବାସୀଙ୍କର ହୃଦୟରେ ଅମର ହୋଇ ରହିଛନ୍ତି । ଆମକୁ ଠିକଣା ବାଟ ଦେଖାଇ ତାଙ୍କରି ପଦାଙ୍କ ଅନୁସରଣ କରିବା ପାଇଁ ନିଜ କାର୍ଯ୍ୟରେ ଇଙ୍ଗିତ ଦେଇଯାଇଛନ୍ତି ।

ଗୋପବନ୍ଧୁ କହିଛନ୍ତି - ପୁଅ-ଝିଅ-ସ୍ୱାମୀ-ସ୍ତ୍ରୀ, ଏସବୁ କିଛି ନୁହେଁ, ଏ ଖାଲି ମିଛମାୟା ବନ୍ଧନ ।

ଭଗବଦ୍ ଗୀତାର ଭଗବାନ କହିଛନ୍ତି, ଜନସେବା ହିଁ ମୋର ସେବା । ମୋତେ ସେବା ବା ଭକ୍ତି କଲେ ମୋର ଆତ୍ମା ସନ୍ତୁଷ୍ଟ ହେବ ନାହିଁ । ଦୀନ-ହୀନ-ଦୁଃଖୀ-ଦରିଦ୍ର ସେବାରେ ହିଁ ମୋର ପରମ ସନ୍ତୋଷ ।

ଗୋପବନ୍ଧୁ ପୁଣି କହିଛନ୍ତି - ସଂସାରରେ କେହି ରହି ନାହିଁ କି ରହିବ ନାହିଁ । ପ୍ରଭୁ ଆମକୁ ପଠାଇଛନ୍ତି ସଂସାରକୁ ଗୋଟିଏ ମହତ୍ ଉଦ୍ଦେଶ୍ୟ ନେଇ । ସେହି ମହତ ଉଦ୍ଦେଶ୍ୟ ହେଉଛି - ଗୋଟଏ କର୍ତ୍ତବ୍ୟ... । ଯେପରି କି ମା ପିଲାଟିଏ ଜନ୍ମ କଲେ ଦେହରୁ ରକ୍ତ ନିଗାଡ଼ି ସେହି ପିଲା ପାଇଁ

କର୍ତ୍ତବ୍ୟ ପଥରେ ଆଗେଇଯାଏ, ସେହିପରି ପ୍ରଭୁ ଆମକୁ ସଂସାରକୁ ପଠାଇଛନ୍ତି କର୍ତ୍ତବ୍ୟ କରିବା ପଥରେ। ସେ କର୍ତ୍ତବ୍ୟ ସରିଲେ ଆମେ ସଂସାରରୁ ବିଦାୟ ନେବା।

ସେହି ପୁଣ୍ୟାତ୍ମା, ଯେ କି ଖରା, ବର୍ଷା - କାଦୁଅ - ଝଡ଼ରେ ପଶି ଦେଶର ସାଧାରଣ ଜନତାଙ୍କ ପାଇଁ ଦେହରୁ ରକ୍ତ ନିଗାଡ଼ି ଗାଁ-ଗାଁ ଚୁଡ଼ା ଚାଉଳ ଧରି ବୁଲି ବାଣ୍ଟୁଥିଲେ, ପରିଧାନ ତାଙ୍କର ଥିଲା ଆଣ୍ଠୁ ଲୁଚୁ ନଥିବା ସାତହାତିଆ ଧୋତି। ଦେହରେ ଜାମା ନଥିଲା- ଚାରିହାତିଆ ଚଦର। ଗୋଡ଼ରେ ଜୋତା ନଥିଲା - ଖାଲିପାଦ। ସେହିଥିରେ ସେ ଆଗେଇ ଚାଲିଥିଲେ ଦୁଃଖୀଦରିଦ୍ରଙ୍କ ସେବାରେ।

ସେହି ଦେଶବାସୀ ପାଇଁ ତାଙ୍କର ପୁଅ ମୃତ୍ୟୁମୁଖରେ ପଡ଼ିଥିଲେ ସୁଦ୍ଧା ତାକୁ ସେ ଚାହିଁ ନଥିଲେ ଏବଂ ସ୍ତ୍ରୀ ବିକଳରେ କାନ୍ଦୁଥିଲେ ମଧ୍ୟ ତା କାକୁତି ଶୁଣି ନଥିଲେ। ଦେଶସେବା ପାଇଁ ଆଗକୁ ବାହାରି ପଡ଼ିଥିଲା ତାଙ୍କର ପାଦ ଦୁଇଟା।

ସେହି ଉତ୍କଳମଣି ବନ୍ୟା-ମରୁଡ଼ି-ମହାମାରି-ଦୁର୍ଭିକ୍ଷରେ ନିଜ ରକ୍ତମାଂସର ଶରୀରକୁ ଉତ୍ସର୍ଗ କରି ଦେଇଥିଲେ।

ଆଜି ତାଙ୍କ କଥା ମନେପଡ଼ିଲେ ହୃଦୟ ଫାଟି ପଡୁଛି। ସେହି ମହାତ୍ମାଙ୍କ ପରି ଆଉ କିଏ, ହେବ ? ନାଁ ସମଗ୍ର ଜନତାଙ୍କ ପାଇଁ ନିଜ ଦେହରୁ ପଳ ପଳ କରି ରକ୍ତ ନିଗାଡ଼ି ଖରା ବର୍ଷା ନ ମାନି କିଏ ତାଙ୍କ ପରି ସେମାନଙ୍କର ସେବା କରିବ ?

ସେହି ମହାତ୍ମା ସମଗ୍ର ଭାରତବର୍ଷର କଣ, ସାରା ପୃଥିବୀର ବାପ। ତାଙ୍କର ବର୍ଷ ବର୍ଷ ଧରି ଜନ୍ମଦିବସ ପାଳନ କରାଯାଉଛି ଏବଂ ସେ ମରିଥିଲେ ମଧ୍ୟ ତାଙ୍କର ନାଁ ଦୀପଶିଖା ପରି ଚାରିଆଡ଼କୁ ଆଲୋକିତ କରି ଝଟକୁଛି। ତାଙ୍କ କଲ୍ୟାଣରୁ ସମଗ୍ର ଦେଶବାସୀ ଆଜି ସ୍ୱାଧୀନଚେତା ହୋଇଉଠିଛନ୍ତି। ମାତ୍ର ତାଙ୍କ ଭଳି ପରଦୁଃଖକାତର ନେତା କେତେ ଜଣ ଅଛନ୍ତି ? ଦେଶ ସ୍ୱାଧୀନ ହୋଇ ଥିଲେ ମଧ୍ୟ ସଂକୀର୍ଣ୍ଣ ସ୍ୱାର୍ଥବୁଦ୍ଧି ଆଜି ସମସ୍ତଙ୍କୁ ସତେ ଯେପରି ଅବାଟରେ ଘେନିଯାଉଛି। ଦୁଃଖୀର ଦୁଃଖରେ ହୃଦୟ ଖୋଲି ତାଙ୍କ ପରି ଆହା ବୋଲି କହିବାକୁ କେତେ ଜଣ ବାହାରି ପଡୁଛନ୍ତି ?





ଶ୍ରୀମତୀ ପ୍ରିୟମ୍ବଦା ମିଶ୍ର

# ମମତାର ଧାରା

ବୋଉ ଆମର ଲେଖିକା କବି - ଗୃହକର୍ମରେ ନିପୁଣା - ସ୍ନେହୀ, ପରୋପକାରୀ ଅସରନ୍ତି ଆଦରର ଭଣ୍ଡାର ! ଆମେ ୭ ଭାଇ ଭଉଣୀ ତାରି ଆଦର୍ଶରେ ହିଁ ଗଢ଼ି ଉଠିଛୁ ! ଘର କଣରେ ବସି ସେ ଏତେ ସୁନ୍ଦର ଲେଖିପାରେ - ସିଲେଇ କରେ ସମସ୍ତେ ଜାଣନ୍ତି - ବିବାହ ବ୍ରତରେ ତାର ଲେଖା କବିତା ସମସ୍ତେ ପଢ଼ନ୍ତି - ଆଜି ଏହି 'ଅଦିନ ଝଡ଼' ସଙ୍କଳନଟି ପ୍ରକାଶ ପାଇଛି । ନନା ଥିଲେ ବହୁତ ଖୁସି ହୋଇଥାନ୍ତେ - ଆଶା ନିଶ୍ଚିତ ଭାବେ ନନାଙ୍କର ଆଶୀର୍ବାଦ ଧାରା ଝରି ଆସିବ ! ଜଗନ୍ନାଥ ଆଶୀର୍ବାଦ କରନ୍ତୁ ! ବୋଉର ଲେଖନୀ ଋଦ୍ଧିମନ୍ତ ହୋଇ ଉଠୁ ।

ଇତି

**ବୁଲି, ଲିଲି , ଡଲି, ମୁନା**

**ବୁଢ଼ା, ବାବୁଲି, କାବୁଲି**